# ଇନ୍ଦ୍ରସଭା

ରଚନା :
ସୂର୍ଯ୍ୟମଣି ତ୍ରିପାଠୀ

ପ୍ରକାଶକ : ଲାର୍କ ବୁକ୍‌ସ
ସୁବର୍ଣ୍ଣରେଖା ଚାମ୍ବର୍ସ
ଭୌମନଗର, ଭୁବନେଶ୍ୱର

ପ୍ରଥମ ସଂସ୍କରଣ-୨୦୦୨

ପ୍ରଚ୍ଛଦ ଶିଳ୍ପୀ :
ବଳଦେବ ମହାରଥୀ

ଲେଜର ଟାଇପ୍ :
ରୟାଲ୍ ଗ୍ରାଫିକ୍ସ
ଏ/୫, ସତ୍ୟନଗର, ଭୁବନେଶ୍ୱର-୭

ମୁଦ୍ରଣ
ଓଁକାର,
ଏନ୍-୪/୨୭୭, ଆଇଆରସି ଭିଲେଜ,
ଭୁବନେଶ୍ୱର

ଷାଠିଏ ଟଙ୍କା ମାତ୍ର

INDRASABHA

*Written by :*
Suryamani Tripathy

*Published by :*
LARK BOOKS
Subarnarekha Chambers
Bhauma Nagar,
Bhubaneswar

*1st Edition-2002*

*Cover Design :*
Baldev Maharatha

*Laser Type :*
Royal Graphics
A/5, Satya Nagar,
Bhubaneswar - 7

*Printed at :*
Omkar,
N4/277, I.R.C. Village,
Bhubaneswar

Rupees Sixty Only

ISBN 81-7375-112-9

# ସୂଚୀ

# ଇନ୍ଦ୍ରସଭା

ଦେଶକୁ ସ୍ୱାଧୀନ କରିବା ପାଇଁ ଯେଉଁ ମହାତ୍ମାମାନେ ସେମାନଙ୍କର ସମସ୍ତ ସୁଖ, ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ଇଂରେଜ ସରକାରଙ୍କ ଚାବୁକମାଡ଼ ଖାଇଥିଲେ, ଆଜି ସେମାନେ ପୂର୍ବପରି ନିର୍ଯାତିତ । ଯେଉଁମାନେ ଇଂରେଜ ଶାସନର ପଦଲେହନ କରି ଐଶ୍ୱର୍ଯ୍ୟର ଅଧିକାରୀ ହୋଇଥିଲେ । ଆଜି ସେମାନଙ୍କ ମଧ୍ୟରୁ ଅନେକଙ୍କ ନାମ ସ୍ୱାଧୀନତା ସଂଗ୍ରାମୀଙ୍କ ନୂତନ ଖସଡ଼ାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ଓ ସେମାନେ ବହୁ ସଭାମଞ୍ଚରେ ସମ୍ମାନିତ । ଏହି କ୍ଷୁଦ୍ର ନାଟକରେ ଏହି ସ୍ୱରର ମୂର୍ଚ୍ଛନା ଗୁଞ୍ଜରୀତ । ଏହା ଯଦି କାହାରିକୁ ପ୍ରଭାବିତ କରିପାରେ, ତେବେ ମୁଁ କୃତଜ୍ଞ ହେବି ।

ନାଟକର ପ୍ରତ୍ୟେକ ଚରିତ୍ର କାଳ୍ପନିକ । ତାଙ୍କର ବୟସସୀମା ଓ ପୋଷାକ ପରିଚ୍ଛଦ ନିର୍ଦ୍ଦେଶକ ସ୍ଥିର କରିବେ । ମଞ୍ଚ ପରିକଳ୍ପନା ପାଇଁ ବି ତାଙ୍କର ପୂର୍ଣ୍ଣ ଅଧିକାର ରହିଛି ।

## ଭୂମିକାରେ

| ପୁରୁଷ | ସ୍ତ୍ରୀ |
|---|---|
| ବୁଢ଼ିଆ | କେତକୀ |
| ହରିଅଜା | |
| ବେଙ୍ଗଜେନେ | |
| ଓ ଅନ୍ୟାନ୍ୟ | |

ଗ୍ରାମ୍ୟ ପରିବେଶ । ହାଟ ନିକଟସ୍ଥ ଛୋଟ ଚା'ଦୋକାନଟିଏ । ବସିଛନ୍ତି ହରି ଅଜା ଓ ବେଙ୍ଗଢେଙ୍ଗେ । ସବୁଦିନ ପରି ବସିବସି ସୁଖଦୁଃଖ ହେଉଛନ୍ତି । ଦୋକାନ ମାଲିକ ମାଧନନା ମଝିରେ ମଝିରେ ଚା' ପ୍ରସ୍ତୁତ କରି ଗରାଖମାନଙ୍କୁ ବିକ୍ରି କରୁଛନ୍ତି, ଓ କଥାବାର୍ତ୍ତାରେ ବି ଯୋଗ ଦେଉଛନ୍ତି । ସେମାନେ ଏ ଅଞ୍ଚଳର ବିଶିଷ୍ଟ ଲୋକମାନଙ୍କ ମଧ୍ୟରେ ବିବେଚିତ ହୁଅନ୍ତି । ହାଟପାଳି ଥିବାରୁ ଦୋକାନ ଟିକେ ବେଶୀ ଗହଳ ଚହଳ ଜଣାପଡୁଛି । ଅଳ୍ପ ଦୂରରେ ହାଟର କୋଳାହଳ । ରାସ୍ତା ଉପରେ ମଧ୍ୟ ମଝିରେ ମଝିରେ ସାଇକେଲ ଘଣ୍ଟି, ରିକ୍ସାଶବ୍ଦ, ସ୍କୁଟର, ବସ୍ ଶବ୍ଦ ବା ଏମିତି କିଛି କିଛି ଶବ୍ଦ ଶୁଣାଯାଉଛି ।

ଦୂରରୁ ବାଜା ଶୁଭିଲା । ସେହି ବାଜାଶବ୍ଦ କ୍ରମେ କ୍ରମେ ନିକଟତର ହେଲା ଓ ବାଜା ସହିତ ଗୀତ ମଧ୍ୟ ଶୁଭିଲା । ସମବେତ କଣ୍ଠରେ ମୃଦଙ୍ଗ ପ୍ରଭୃତି ବଜାଇ କିଛି ଲୋକ ଗୀତ ଗାଉଥିଲେ ।

ନିଅ ଭାଇ ବାଳବଢା ଉକୁଣିମାରି,
କଟକ ବକ୍ସିବଜାରେ ହୁଏ ତିଆରି ।
ଥରେ ମୁଣ୍ଡେ ବୋଳିଦେଲେ ଯତନ କରି,
ବାଳରୁ ଉକୁଣି ଯିବେ ସବଂଶେ ମରି ।

ଜଣେ : ନିଅ ଭାଇ ଉକୁଣିମାରି ଔଷଧ । ସମଗ୍ର ଦେଶରେ ଚହଳ ପକାଇଥିବା ଖାଣ୍ଟି ଉକୁଣିମାରି ଔଷଧ । ବଡ଼ ପୁଡ଼ିଆ ପାଞ୍ଚ ଟଙ୍କା, ସାନ ପୁଡ଼ିଆ ତିନି ଟଙ୍କା । ଆଉ ମୁଣ୍ଡରେ ଲଗାଇଲେ ନାତୁଣୀ ମୁଣ୍ଡରୁ ଉକୁଣିମାନେ ଚିରଦିନ ପାଇଁ ବିଦାୟ ନିଅନ୍ତି ।
(ଗୀତରେ)

ନିଅ ଭାଇ ବାଳବଢା ଉକୁଣିମାରି
ଥରେ ମାତ୍ର ମୁଣ୍ଡେ ମାରି ଯାଅ ହେ ଚରି ।
ବଡ଼ ବଡ଼ ଲମ୍ବାବାଳ ମୁଣ୍ଡରେ ଧରି
କୁଣ୍ଡିଆ କଷ୍ଟରୁ ତୁମେ ଯାଅ ଉତୁରି ।

ଏକ ସ୍ୱର : (ଭାଷଣ ଦେବା ଭଙ୍ଗୀରେ) : ହେ ମୋର ଅତି ପ୍ରିୟ ଭାଇ ଓ ଭଉଣୀମାନେ ! ଆପଣମାନେ ମୋ କଥା ମନଦେଇ ଶୁଣନ୍ତୁ । ମୁଁ ........ ମାନେ ....... ଆମେ ଆଜି ପ୍ରଥମ କରି .......

ଅନ୍ୟ ସ୍ୱର : ...... ଆପଣମାନଙ୍କ ସହରକୁ........

ଏକ ସ୍ୱର : ନା, ନା । ଆମେ ପ୍ରଥମ କରି ଆପଣମାନଙ୍କ ଗ୍ରାମକୁ.......

ଅନ୍ୟ ସ୍ୱର : ହଁ, ହଁ ଗ୍ରାମକୁ । ମାନେ ସୁଜଳା, ସୁଫଳା ଶସ୍ୟ ଶ୍ୟାମଳା ସୁନ୍ଦର ଗ୍ରାମକୁ.....

ଏକ ସ୍ୱର : କିଛି ଖାଣ୍ଟି ଉକୁଣିମାରି ଔଷଧ ନେଇ ଆସିଛୁ ।

ଅନ୍ୟ ସ୍ୱର : ମାନେ ଆମ ପାଖରେ ଏଇ ଖାଣ୍ଟି ଉକୁଣିମାରି ଔଷଧର .... ମାନେ .... ଖୁବ୍ କମ୍ ...... ମାନେ ଲିମିଟେଡ୍ .....

ଏକ ସ୍ୱର : ମାନେ ବହୁତ କମ ମାଲ ଅଛି ।

ଅନ୍ୟ ସ୍ୱର : ଯେଉଁମାନେ ଦୀର୍ଘଦିନ ଧରି ......

ଏକ ସ୍ୱର : ଉକୁଣିମାନଙ୍କ ଅତ୍ୟାଚାରରେ ଅତ୍ୟାଚାରିତ.....

ଅନ୍ୟ ସ୍ୱର : ସେମାନେ ଖୁବ୍ ଶୀଘ୍ର ଆମଠାରୁ.....

ଏକ ସ୍ୱର : ବଳିପଡ଼ିଥିବା ସାମାନ୍ୟ କେତେ ପୁଡ଼ିଆ କିଣିନେଇ....

ଅନ୍ୟ ସ୍ୱର : ଚିରଦିନ ପାଇଁ ଉକୁଣିମାନଙ୍କ ପ୍ରାଦୁର୍ଭାବରୁ......

ଏକ ସ୍ୱର : ମାନେ ଦାଉରୁ .....

ଅନ୍ୟ ସ୍ୱର : ନିଜକୁ ସମ୍ପୂର୍ଣ୍ଣ ଭାବେ......

ଏକ ସ୍ୱର : ରକ୍ଷା କରନ୍ତୁ ।

ଅନ୍ୟ ସ୍ୱର : ବନ୍ଧୁଗଣ ! ନିଅନ୍ତୁ । ଖାଣ୍ଟି ଉକୁଣିମାରି ଔଷଧ । ଏହା କେବଳ ଉକୁଣିମାନଙ୍କର ବିନାଶ କରେ ନାହିଁ.....

ଏକ ସ୍ୱର : ଆପଣମାନଙ୍କର ମୁଣ୍ଡର ବାଳକୁ ମଧ ଦୀର୍ଘତର କରାଏ ।

(ଆସ୍ତେ ଆସ୍ତେ ସେମାନଙ୍କ ନିକଟରେ ଲୋକ ଜମା ହେଲେ । ସେହି ଭିଡ଼କୁ ଦୂରରୁ ଦେଖି ଆକର୍ଷିତ ହୋଇ ଆସିଲା ବୁଦ୍ଧିଆ । ମାତ୍ର ଅତ୍ୟନ୍ତ ନିର୍ବୁଦ୍ଧିଆଙ୍କ ପରି ଆରମ୍ଭ କଲା ।)

ବୁଦ୍ଧିଆ : ହେ ବାବୁ ! କ'ଣ ବିକୁଛ ମ ?

ଏକ ସ୍ୱର : ଉକୁଣିମାରି ଔଷଧ ।

ଅନ୍ୟ ସ୍ୱର : ଏହା ମୁଣ୍ଡର ବାଳକୁ ବି ବଢାଏ ।

ବୁଦ୍ଧିଆ : ମୋ ମୁଣ୍ଡରେ ତ ବହୁତ ବାଳ ଅଛି ।

ଏକ ସ୍ୱର : ଆଉ ତୁମ ସ୍ତ୍ରୀ, ମାନେ ପତ୍ନୀଙ୍କ ମୁଣ୍ଡରେ ?

ବୁଦ୍ଧିଆ : ତା' ମୁଣ୍ଡରେ ବି ବାଳ.... ।

ଅନ୍ୟ ସ୍ୱର : କ'ଣ ଅଛି ?

ବୁଦ୍ଧିଆ : ବାଳ । (ଲାଜରା ହୋଇ)

ଏକ ସ୍ୱର : ଆଉ କିଛି ?
ବୁଢିଆ : (ଲାଜରେ ମୁଣ୍ଡ ତଳକୁ କରି) ଉକୁଣି ବି ।
ଅନ୍ୟ ସ୍ୱର : ସାଙ୍ଗେ ସାଙ୍ଗେ ଦୁଇଟି ବଡ଼ ପୁଡ଼ିଆ କିଣି ନିଅ ।
ବୁଢିଆ : ସେଥିରେ କ'ଣ ମୁଣ୍ଡରୁ ଉକୁଣି ମରିବେ ?
ଅନ୍ୟ ସ୍ୱର : ଅବଶ୍ୟ ମରିବେ ।
ଏକ ସ୍ୱର : ଅଲବତ୍ ମରିବେ ।
ଅନ୍ୟ ସ୍ୱର : ମରିବେ ମାନେ..... ମରି ମରି ଥକିବେ ।
ବୁଢିଆ : ଆଉ ଯଦି ନମଲେ...... ?
ଏକ ସ୍ୱର : ଥାଉ, ଥାଉ ସେମିତି କୁହନା ।
ଅନ୍ୟ ସ୍ୱର : ତୁମେ ନ ନିଅ ପଛେ, ହେଲେ ମୋ ଔଷଧର ଦୁର୍ନାମ କରନା ।
ଏକ ସ୍ୱର : ତାକୁ ଶୁଭିଲେ, ସେ ବିଚରା ମନ କଷ୍ଟ କରିବ ।
ବୁଢିଆ : ଏଁ ? କ'ଣ କହିଲ ? ତୁମ ଔଷଧକୁ ବି କଥା ଶୁଭେ ?
ଅନ୍ୟ ସ୍ୱର : ଆହେ, ସେ କ'ଣ ଏମିତି ସେମିତି ଔଷଧ ହୋଇଛି କି ?
ଏକ ସ୍ୱର : ସେ ପରା ଖାଣ୍ଟି ଔଷଧ ।
ବୁଢିଆ : ଆଚ୍ଛା ହଉ, ମତେ ଦି'ପୁଡ଼ିଆ ଦିଅ ।
ଅନ୍ୟ ସ୍ୱର : ଦି'ପୁଡ଼ିଆ ନେଇ କ'ଣ କରିବ ?
ବୁଢିଆ : ଆଉ ?
ଏକ ସ୍ୱର : ଉକୁଣି ତ ହେଲା ଡ଼ିଆଁ ରୋଗ ।
ଅନ୍ୟ ସ୍ୱର : ଜଣକ ମୁଣ୍ଡରେ ହେଲେ, ଆଉ ଜଣକ ମୁଣ୍ଡକୁ ଡ଼େଇଁବ ।
ଏକ ସ୍ୱର : ଏକା ରାତିକେ ପରା ସିଏ ସାତ ମଣିଣା ଡ଼ିଏଁ ।
ବୁଢିଆ : ହଁ ପରା । ମୋ ସ୍ତ୍ରୀ, ପିଲା ସମସ୍ତଙ୍କ ମୁଣ୍ଡରେ ଉକୁଣି ଖାଲି ସାଲୁବାଲୁ ହେଉଛନ୍ତି ।
ଏକ ସ୍ୱର : ମୁଁ ତ ସେଇଥି ପାଇଁ କହୁଛି, ଆଉ ଦି' ପୁଡ଼ିଆ ଅଧିକ ନିଅ ।
ବୁଢିଆ : ମୋ ପାଖରେ ଏତେ ପଇସା ନାହିଁ ।
ଅନ୍ୟ ସ୍ୱର : ଆମେ କମ୍ପାନୀ ରେଟ୍‌ରେ ଲାଭ ନରଖି ତୁମକୁ ଦେଇଦେବୁ ।
ବୁଢିଆ : ନା ଥାଉ । ମୁଁ ଯାଉଛି ।
ଏକ ସ୍ୱର : (ସାମାନ୍ୟ ବ୍ୟସ୍ତ ଭାବରେ) ଆଚ୍ଛା, ଆଚ୍ଛା । ତୁମେ ସେଇ ଦି' ପୁଡ଼ିଆ ନିଅ । ବଇନି ଗରାଖ । ଫେରିଗଲେ ହବନି । (ପୁଡ଼ିଆ

ଦେଲେ ଓ ବୁଢିଆ ଠାରୁ ଟଙ୍କା ନେଲେ । ଆଉ କେତେଜଣଙ୍କୁ ବି ସେମାନେ ଔଷଧ ବିକି ଟଙ୍କା ନେଇ ଚାଲିଗଲେ । ଯିବାବେଳେ ଗୀତର ଶେଷସ୍ୱର ଧରି ଗାଇ ଗାଇ ଗଲେ । ଚା' ଦୋକାନରୁ ହରି ଅଜା ଡ଼ାକିଲେ)

ହରି ଅଜା : ବୁଢିଆ !

ବୁଢିଆ : (ହଡବଡ଼େଇ) ଆଜ୍ଞା !

ବେଙ୍ଗ ଢେଙ୍କେ : ଆରେ ଟିକେ ଏଠିକି ଆସିଲୁ ?

ହରି ଅଜା : କ'ଣ ଗୁଡ଼େ ତାଙ୍କଠୁଁ କିଣିଲୁ କିରେ ?

ବୁଢିଆ : ଯେ ପରା ଉକୁଣିମାରି ଔଷଧ ଅଜା !

ବେଙ୍ଗ ଢେଙ୍କେ : ଆରେ ସେଥିରେ କ'ଣ ସତରେ ଉକୁଣି ମରିବେ ?

ବୁଢିଆ : ମଲା । ସେ ବାବୁମାନେ ଏତେ ଦୂରରୁ ଆସି ଆମ ଏଠି ଔଷଧ ବିକୁଛନ୍ତି । ନିଶ୍ଚେ ଭଲ ଔଷଧ ହୋଇଥିବ ।

ମାଧନନା : (ଚା' ଦୋକାନୀ ଅଳ୍ପ ହସି ପରିହାସ କରିବା ଢଙ୍ଗରେ) ତୁମେ ବୁଢା ଦି'ଟା ମଣିଷ ହେବନି । କିହୋ ଶୁଣିଲନି ? ସେ ସହରୀ ବାବୁ ଦି'ଟା ଆମ ବୁଢିଆ ଭଳିଆ ମଫସଲିଆମାନଙ୍କୁ କମ୍ପାନୀ ଦାମରେ ଖାଣ୍ଟି ଜିନିଷ ପରା ବିକି ଦେଇଗଲେ ?

ହରି ଅଜା : ଆରେ ଏ ସହରୀ ଖାଣ୍ଟି ଔଷଧ ମୁଣ୍ଡରେ ଲଗାଇ ଆମ ନାତୁଣୀବୋହୂ ମୁଣ୍ଡରୁ ବାଳକେରାକ ଉପୁଡ଼ିଯିବ ନାହିଁ ତ ?

ବୁଢିଆ : (ନିର୍ବୋଧ ପରି) ବାବୁମାନେ ପରା କହିଲେ, ଏ ଔଷଧଟା ପୂରା ଖାଣ୍ଟି....

ବେଙ୍ଗ ଢେଙ୍କେ : ହଁ, ହଁ, ହେଇଥିବ, ହେଇଥିବ । ବାବୁମାନେ ଯେତେବେଳେ କହିଛନ୍ତି....

ହରି ଅଜା : ଆଉ ସେ ବାବୁମାନେ ଯେତେବେଳେ ସହରୀ ବାବୁ.... ?

ମାଧନନା : ଔଷଧ ନିଶ୍ଚୟ ଖାଣ୍ଟି ହୋଇଥିବ ।

(ଚା' ଦୋକାନ ବାହାରୁ ପାଟି ଶୁଭିଲା- କହି କହି ପ୍ରବେଶ । ସାଙ୍ଗରେ ଜଣେ ସ୍ତ୍ରୀଲୋକ- ପୁରୁଷ ଲୋକଟି ସ୍ତ୍ରୀ ଲୋକର ହାତ ଧରି ପ୍ରାୟତଃ ଟାଣି ଟାଣି ତାକୁ ଦୋକାନ ଭିତରକୁ ଆଣୁଛି ଓ କହୁଛି....)

ଚ଼ଇତା : ଖାଣ୍ଟି ହେଇଥିବ କ'ଣ ? ଆଲବତ୍ ଖାଣ୍ଟି । ଚ଼ଇତା ଖାଣ୍ଟି କଥା କୁହେ

ବୋଲି, ତା ଉପରେ ସମସ୍ତେ ଚିଡ଼ନ୍ତି ।

କେତକୀ : (ଚଇତାର ସ୍ତ୍ରୀ, କାଖରେ ଅଳ୍ପ କେତେଖଣ୍ଡ ଲୁଗାର ଛୋଟ ଗଣ୍ଠିଲିଟିଏ ଧରିଛି) କି ଖାଣ୍ଟି କଥା ଗୁଡ଼ାକ ତୁମେ କହୁଛ ? ତୁମ ଖାଣ୍ଟି କଥାଗୁଡ଼ାକ ତୁମ ଘରେ ରଖ । ସେଇଆକୁ ତୁମେ ଖାଇବ ଆଉ ତୁମ ଛୁଆଙ୍କୁ ଖୋଇବ । ଏଇ ଫେରନ୍ତା ବସ୍‌ରେ ମୁଁ ମୋ ବାପ ଘରକୁ ଯାଉଛି ।

ଚଇତା : କିହୋ କାହିଁକି ? ହଠାତ୍ ତୁମେ ଏମିତି ଗୋଟେ ନିଷ୍ପତ୍ତି ନେଇ କାହିଁକି ? ମୁଁ କ'ଣ କଲି କି ? ଘରଛାଡ଼ି, କାଖରେ ଲୁଗା ବୁଜୁଳି ଧରି ସିଧା ବସ୍‌ଷ୍ଟାଣ୍ଡକୁ ଧାଇଁଛ ?

କେତକୀ : ଆହା ହା.... ତୁମକୁ କିଛି ଜଣା ପଡୁନି ? ଘର କେମିତି ଚଳୁଛି କିଛି ଖବର ରଖୁଛ ?

ଚଇତା : କିହୋ କଥାଟା କ'ଣ ଟିକେ ଖୋଲି କୁହ ।

କେତକୀ : କ'ଣ ଆଉ ଅଖୋଲା ଅଛି ଯେ, ଆଉଥରେ ତୁମକୁ ଖୋଲିକରି କହିବି ।

ଚଇତା : ଏ ହାଟ ପାଖଟାରେ ତୁମେ ମୋ ସାଙ୍ଗରେ ଆଉ କଟାଳ କରନା କେତକୀ । ଚାଲ ଘରକୁ ଫେରି ଚାଲ । ଘର ଭିତରେ କବାଟ କଣ୍ଟା ଦେଇ ମତେ ଯାହା କହିବ, ମୁଁ ଶୁଣିବି ।

କେତକୀ : ଶୁଣିବ ? କ'ଣଟେ ଶୁଣିବ, କ'ଣଟେ ଆଉ ଶୁଣିବାକୁ ବାକି ଅଛି ? ମୋ କଥା ଯଦି ଆରମ୍ଭରୁ ଶୁଣିଥାଆନ୍ତ....?

ଚଇତା : ଟିକେ ଥୟ ଧର କେତକୀ । ପାଟିତୁଣ୍ଡ ବନ୍ଦ କର । ଆଗ ଘରକୁ ଚାଲ ।

କେତକୀ : କୋଉଁଠି କି ?

ଚଇତା : ଘରକୁ ।

କେତକୀ : କୋଉ ଘରକୁ ?

ଚଇତା : କାହିଁକି ? ଆମ ଗାଁ ଘରକୁ ? ଯେଉଁଠି ତୁମେ, ମୁଁ, ଆମ ପିଲାମାନେ ଏତେଦିନ ଧରି ସୁଖର ସଂସାର କରି ଆସୁଥିଲେ ।

କେତକୀ : ଥାଉ, ଥାଉଲୋ ମୋ ସୁଖର.... ସଂସାର । ଯୋଉ ସଂସାର ତ..... । ସେଠି ଓଳିଏ ଖାଇଲେ, ଓଳିଏ ଉପାସ ।

ଚଇତା : ହଁ, କୋଉ ଓପାସ ରହୁ ନଥିଲ କି ?

କେତକୀ : ଜେଜେ, ଅଜା ! ଶୁଣୁଛ ଯାଙ୍କ କଥା ? ଯେ କୁଆଡେ ମତେ ତାଙ୍କ ସୁଖର ସଂସାର ଭିତରେ ବାନ୍ଧି ରଖିଛନ୍ତି ?

ଚଇତା : ଆଚ୍ଛା ହେଉ । ପଚାର ଜେଜେଙ୍କୁ, ପଚାର ଅଜାଙ୍କୁ । ମୁଁ କ'ଣ ତତେ କଷ୍ଟରେ ରଖିଛି ?

ହରି ଅଜା : ଆରେ ଏ ପାଖକୁ ଆସ । ସେ ବାଟ ମୁହଁଟାରେ ଠିଆହୋଇ କାହିଁକି ସେମିତି ହେଉଛ ?

କେତକୀ : ମୁଁ ତୁମ କଥା ମାନୁଛି ଅଜା, ତୁମେ ଟିକେ କଥାଟା ବୁଝିଦେଲ ।

ଚଇତା : ହଁ, ହଁ । ସେଇଆ ହେଉ । ଖାଲି ଅଜା କାହିଁକି ? ଏଠି ଜେଜେ ବି ଅଛନ୍ତି । ମାଧନନା ବି ଅଛନ୍ତି । ସେମାନେ ସମସ୍ତେ ଶୁଣନ୍ତୁ । ମୁଁ କେବେବେଳେ ଆଲ୍‌ଟୁ ଫାଲ୍‌ଟୁ କଥା କୁହେ ନାହିଁ । ମୋର ସବୁବେଳେ ଖାଣ୍ଟି କଥା ।

ମାଧନନା : (ପରିହାସରେ) ଯାର ସବୁବେଳେ ଖାଣ୍ଟି କଥା ।

କେତକୀ : ମତେ ଆଉ ଚିଡ଼ାନା କହୁଛି । ଶୁଣୁଛ ଜେଜେ ? ଶୁଣୁଛ ଅଜା ? ଯାଙ୍କର କୁଆଡ଼େ ଖାଲି ଖାଣ୍ଟି କଥା ?

ଚଇତା : ମୁଁ କେବେବେଳେ କ'ଣ ଅଖାଣ୍ଟି କଥା କହିଲି ଯେ.....?

କେତକୀ : କହିବି....?

ଚଇତା : କୁହ ।

କେତକୀ : ତୁମେ ସେ ବେଙ୍କ୍ ମେନେଜର ବାବୁଙ୍କୁ ମାରିବ ବୋଲି କହୁଥିଲ କାହିଁକି ?

ଚଇତା : କହୁଥିଲି କ'ଣ ? ତାକୁ ମୁଁ ମାରିବି ।

କେତକୀ : କାହିଁକି ମାରିବ ?

ଚଇତା : ମାରିବି ନାହିଁ ? ନା.... ନା.... ମାରିବି ନାହିଁ ? କଣ ବୋଲି ସେ ମତେ ପାଇଚି କି ?

କେତକୀ : (ସମାନ ଭାବରେ) ହଁ....ହଁ.....ମାର । ଏବେ ମାର । ଏଇଠୁ ବର୍ତ୍ତମାନ ଯାଇ ମାର । ମାରି ମାରି ତା' ହାତ ଗୋଡ଼ ଭାଙ୍ଗିଦିଅ । ହେଲେ କ'ଣ ପାଇଁ ମାରିବ ଏଠି ସମସ୍ତଙ୍କ ଆଗରେ କହି, ମତେ ମୋ ବାପଘରକୁ ପଠେଇ ଦେଇ, ତା ପରେ ଯାଇ ମାର ।

ହରି ଅଜା : କଥା କ'ଣ କିରେ ଚଇତା ?

ବେଙ୍ଗ ଢେଙ୍କେ : ତୁ କ'ଣ ମେନେଜର ବାବୁଙ୍କୁ ମାରିବାକୁ ଠିକ୍ କରିଛୁ ?

ମାଧନନା : ହଁ । ଖାଲି ମାଡ଼ଟା ବୋଧେ ବାକି ଅଛି ।

ହରି ଅଜା : ମାନେ ?

ମାଧନନା : ଚଇଚା ତ ଆମର ଯେତେବେଳେ ପାରେ ସେତେବେଳେ ଯେଉଁଠି ନାହିଁ ସେଠି, ଯାହା ଆଗରେ ପାରେ ତା'ଆଗରେ ମେନେଜର ବାବୁଙ୍କ ଓଜର ଉଠେଇ ଗାଳି ଫଜିଦ୍ କରୁଛି ।

ବେଙ୍ଗ ଢେଙ୍କେ : କିରେ ଚଇତା ? ଆରେ କଥା କ'ଣ ?

ହରି ଅଜା : ଆରେ ଗାଳିରୁ ପୁଣି ମାଡ ଆଡ଼କୁ କଥା ଗଲାଣି ?

ବେଙ୍ଗ ଢେଙ୍କେ : କିରେ କାହିଁକି ମାରିବୁ ?

କେତକୀ : ହଁ ଢେଙ୍କେ । ସେଇକଥା ଟିକେ ପଚାରନି ।

ମାଧନନା : କ'ଣ ଆଉ ପଚାରୁଛ ? ନୂଆ ଲୋନ୍ ଦେଇ ନଥିବ ?

ଚଇତା : (ରାଗରେ) ଦବ ନାହିଁ କାହିଁକି ନା ?

ମାଧ ନନା : (ସମାନ ଭାବରେ ଶ୍ଳେଷାର୍ଥରେ) ସିଏ ଏଠି ଲୋନ୍ ଦେବାକୁ ଚାକିରି କରିଛି । ଆଉ ଲୋନ୍ ଦବନି ? ପୁଣି ଆମ ଚଇତାକୁ ? ଆଉ ଚଇତା ସେ କଥା ବରଦାସ୍ତ କରି ତଳକୁ ମୁଣ୍ଡ ପୋତି ରହିଯିବ । ପୁଣି ବ୍ୟାଙ୍କ୍ ମ୍ୟାନେଜର୍ ଅକ୍ଷତ ଅବସ୍ଥାରେ ମୁଣ୍ଡ ଉପରକୁ କରି ଚୈତନ୍ୟ ବାବୁଙ୍କ ଜମିଦାରୀରେ ଚଳପ୍ରଚଳ ହେଉଥିବ ।

ଚଇତା : (ରାଗରେ) ମୁଁ ତାକୁ ନିଶ୍ଚେ ମାରିବି ।

ମାଧନନା : (ଶ୍ଳେଷରେ ସମାନ ଭାବରେ) ତୁ ତାକୁ ଅଲବତ୍ ମାର ।

ହରି ଅଜା : କିରେ ଏମିତି ମାରଧର କଲେ କ'ଣ ସମସ୍ୟାର ସମାଧାନ ହୋଇ ଯିବ ?

ବେଙ୍ଗ ଢେଙ୍କେ : (ବୁଝେଇବା ଭଙ୍ଗିରେ) ତୁ ଯାଇ ମେନେଜର ବାବୁଙ୍କୁ ତୋ ଦୁଃଖ ବୁଝେଇ ଶୁଝେଇ କହୁନୁ ? ସିଏତ ଭାରି ଭଲଲୋକ ବୋଲି ସମସ୍ତେ କହୁଛନ୍ତି ।

ମାଧ ନନା : ସମସ୍ତେ କହିଲେ କ'ଣ ହେଲା ?

କେତକୀ : (ରାଗରେ) ଆମର ଇଏ କହିଲେ ସିନା ହବ ।

ହରି ଅଜା : ତୁଟିକେ ଚୁପରହିଲୁ କେତକୀ ? ଆରେ ଚଇତା ! ମୁଁ ଗୋଟେ କଥା

କହିବି ମାନିବୁ ?

ଚଇତା : କହନ୍ତୁ । ମୁଁ କ'ଣ ତୁମର କୋଉ କଥାକୁ ଅମାନିଆ ହୁଏ ?

କେତକୀ : (ମୁହଁ ମୋଡି) ଛିଆଲୋ ମୋ ମାନିଆ ମରଦ ।

ଚଇତା : ଅଜା ! ଜେଜେ । ଦେଖୁଛ ତାକୁ ? କେମିତି ମୁହଁ ମୋଡ଼ି ତୁମ ଆଗରେ ପଦକୁ ପଦେ କହୁଛି ?

ହରି ଅଜା : ଏ କେତକୀ । ଚୁପହେଇ ବସ । ଆଛା ଚଇତା ! ତୁ ଆମର ମେନେଜର ବାବୁଙ୍କ ପାଖକୁ ଯାଇ ତାଙ୍କୁ ବୁଝେଇ ଶୁଝେଇ ଗୋଟେ ରିକ୍ସା ଲୋନ୍ ନେଇଆ । ସିଏ ଏବେ ଅନେକ ଲୋକଙ୍କୁ ରିକ୍ସା ଲୋନ୍ ଦେଉଛନ୍ତି ।

ବେଙ୍ଗ ଜେଜେ : (ପରିହାସରେ) ଲୋନ୍ ଟଙ୍କାରେ ରିକ୍ସା କିଣିଲେ ଆମକୁ ଟିକେ ସେଥିରେ ବସେଇ ବୁଲେଇ ଆଣିବୁ ।

କେତକୀ : (ରାଗମିଶା ପରିହାସରେ) ହେଲା, ହେଲା । ରିକ୍ସା କିଣା ହୋଇଗଲା ।

ହରି ଅଜା : ମାନେ.....? କ'ଣ କିରେ ଚଇତା ?

ଚଇତା : (ନମ୍ର ସ୍ୱରରେ ମୁଣ୍ଡତଳକୁ କରି) ରିକ୍ସା ଲୋନ୍ ପରା ମୁଁ ଅନେକ ଦିନରୁ ଆଣି ସାରିଛି ।

ବେଙ୍ଗ ଜେଜେ : ତୁ ତ କାହିଁ ରିକ୍ସା କିଣି ନାହୁଁ ? ସେ ଟଙ୍କା ତ ନିଶ୍ଚୟ ରଖିଥିବୁ ?

କେତକୀ : (କ୍ରୋଧରେ) ଟଙ୍କା ? ଟଙ୍କା କାହିଁ ଜେଜେ ? ଯାଙ୍କ ଭଳିଆ ଅଳସୁଆଙ୍କୁ ମେନେଜର ବାବୁ ରିକ୍ସା ଲୋନ୍ ଦେଲେ କାହିଁକି କେଜାଣି ? ପ୍ରକୃତରେ ସେଇଥିପାଇଁ ତ ତାଙ୍କ ଉପରେ ମାଡ଼ ହେବାକଥା ।

ହରି ଅଜା : ଟଙ୍କା କ'ଣ କଲୁ କିରେ, ଚଇତା ?

ମାଧ ନନା : ଖାଇଦେଲା । ଅଳସୁଆଟା ତ । କେବେହେଲେ କିଛି କାମ ଦାମ କରେ ନା । ଟଙ୍କା ହାତରେ ପଡ଼ିଲେ ଚଇତାର କଚ୍ଚେ ପୁଅ ବାର ।

ବେଙ୍ଗ ଜେଜେ : (କିଛିଟା ଆଶ୍ଚର୍ଯ୍ୟ ଭାବ ପ୍ରକଟ କରି) ଆରେ ସେ ଋଣ ସୁଝା ହେବ କେମିତି ?

ମାଧ ନନା : ବୁଝିଲେ ଜେଜେ । ଋଣ ଶୁଝିବାପାଇଁ ଯଦି ବ୍ୟବସ୍ଥା କରା ଯାଆନ୍ତା, ତେବେ ଆମ ଏ ଚଇତାମାନେ କ'ଣ ଏମିତି ଠାକୁର ଖାଇ ଖଟୁଳି

ଖାଇ ଯାଆନ୍ତେନା ?

ହରି ଅଜା : (ନିଜେ ଚିନ୍ତା କରି ସାରି) ଆଚ୍ଛା ଚଇତା ! ତୁ ଏଥର ମେନେଜର ବାବୁଙ୍କୁ କୁହାକୁହି କରି ଗୋଟେ ଜର୍ସି ଗାଈ କିଣିବାକୁ ଲୋନ୍ ନେଇଆ । କେତକୀ ଗାଈକଥା ବୁଝିବ । କ୍ଷୀର ତକ ଆମର ଏଇ ମାଧ ଦୋକାନରେ ବିକି ଦେବୁ ।

ବେଙ୍ଗ ଢେଙ୍କେ : ଆରେ ହଁ ତ । ତୁ ଆମର ସେଇଆ କ'ର ।

ମାଧ ନନା : (ପ୍ରତିଶ୍ରୁତି ଦେବା ଭଙ୍ଗିରେ) ମୁଁ ତୋର ସବୁ କ୍ଷୀର କିଣି ନେବି ।

କେତକୀ : (ହସିଲା).....

ହରି ଅଜା : (କେତକୀକୁ) ଆଲୋ । ତୁ ହସୁଛୁ କାହିଁକି ?

କେତକୀ : (ସେମିତି ହସି ଚାଲିଥାଏ)

ବେଙ୍ଗ ଢେଙ୍କେ : ଆଲୋ । ଇଏତ ଅତି ଭଲ କଥା । ଘରକୁ ଗୋମାତା ଆସିଲେ ଘରେ ମଙ୍ଗଳ ହୁଏ ।

କେତକୀ : ହଁ । (ହସି ହସି) ଆମର ତ ଖାଲି ମଙ୍ଗଳ ମାଡ଼ିଯାଉଛି ?

ହରି ଅଜା : ହଉ, ହଉ, ହେଲା । ତୁ ଏମିତି ହସିଲୁ କାହିଁକି ଆଗ କହିଲୁ ?

ଚଇତା : ତାକୁ ସେଇକଥା ପଚାରନି ଅଜା ?

ବେଙ୍ଗ ଢେଙ୍କେ : ହଉ, ହଉ । ଅଜା ତାକୁ ହସିବା କଥା ପଚାରୁ ଥାଉ । ତୁ ଆମର ଏବେ ମେନେଜର ବାବୁଙ୍କ ପାଖକୁ ଯା । ଗାଈ କିଣି କ୍ଷୀର ବ୍ୟବସାୟ କରିବା ଅତି ଭଲ କଥା । ପ୍ରତିଦିନ ହାତକୁ ଦି'ପଇସା ନଗଦ ଆସିବ । ଛୁଆ ପିଲାଙ୍କ ପାଟିରେ ବି ଟିକେ କ୍ଷୀର ବାଜିବ ।

କେତକୀ : (ଫେଁ କରି ହସିଦେଇ) ଆଉ ବାଜିବ କ'ଣ ମ ଢେଙ୍କେ ? ସେ କଥା କ'ଣ ଆଜିଯାଏ ଆଉ ବାକି ଅଛି ?

ମାଧ ନନା : ତା' ହେଲେ ଜର୍ସି ଗାଈଟି ବି....

କେତକୀ : (ପାଦ ପୂରଣ କରିବା ଭଙ୍ଗୀରେ) ପେଟରେ ପଡ଼ି କେଉଁ ଦିନରୁ ହଜମ ହୋଇ ସାରିଲାଣି ।

ବେଙ୍ଗ ଢେଙ୍କେ : ଚଇତା ତା'ହେଲେ ସେଇଥିପାଇଁ ଗୁମ୍‌ମାରି ବସୁଛି ।

ହରି ଅଜା : (ଟିକେ ଭାବି) ଆଚ୍ଛା ହେଉ । ତୁ ଏବେ ଗୋଟେ କାମ କର । (ଚଇତା ଉଦ୍ଦେଶ୍ୟରେ)

ଚଇତା : କେଉଁ କାମ ?

ହରିଅଜା : ଏବେ ଗୋଟେ ପରା କ'ଣ ବେଲର କୁକୁଡ଼ା ଚାଷ ପାଇଁ ଲୋନ୍ ମିଳୁଛି ?

କେତକୀ : (ପୁଣି ହସିଲା)

ମାଧ ନନା : ବେଲର କୁକୁଡ଼ା ନୁହେଁମ ଅଜା । ବ୍ରଏଲର୍ କୁକୁଡ଼ା ।

ହରି ଅଜା : ହଁ ହୋ ସେଇ ବ୍ରେଲର । ତୁ ମେନେଜର ବାବୁଙ୍କୁ କହି ସେଥିରୁ କିଛି ଆଣି ଚାଷ କର ।

ଚ଼ଇତା : ନା, ସେକଥା ହବନାହିଁ ।

ହରି ଅଜା : କିରେ ହବନାହିଁ, କାହିଁକି ? ନିଶ୍ଚୟ ହବନା....

କେତକୀ : (ହସିହସି) ଆଉ ହବ କେମିତି ଅଜା ? ସିଏ କ'ଣ ଆଜିଯାଏ ବାକି ଅଛି ? ମୁଁ ପରା ଜୋର୍ କରି ସେଇ ଲୋନ୍‌ରୁ ଅଳ୍ପ କେଇଟା ଟଙ୍କା ନେଇ ଦଶଟା କୁକୁଡ଼ା କିଣି ପୋଷିଥିଲି । ଇଏ ଆମର ଲୋନ୍‌କୁ ଖାଇ....

ମାଧ ନନା : (ପଦ ପୂରଣ କଲା ଭାବରେ) ତାକୁ ବି ମୋଡ଼ି ଖାଇଗଲା । ଏଇୟା ନା....?

କେତକୀ : (ରାଗରେ ନୀରବ)

ବେଙ୍ଗ ଜେଜେ : (ଉତ୍କଣ୍ଠାର ସହିତ) ଆରେ ଚ଼ଇତା ?

ଚ଼ଇତା : (ଅନାସକ୍ତ ଭାବରେ) ଏଁ ।

ହରି ଅଜା : (ଆଶ୍ଚର୍ଯ୍ୟ ହୋଇ) ଆରେ ତୁ ସବୁ ଲୋନ୍ ଖାଇଖାଇ ଶେଷ କରି ଦେଲୁଣି ?

ଚ଼ଇତା : (ନିରୁଦ୍‌ବିଗ୍ନ ଭାବରେ) ନାଇଁମ' ଅଜା । ସବୁ କୋଉଠୁ ସରିଲା ?

ମାଧନନା : (ଚ଼ଇତାକୁ) ଆଉ ଏବେ କ'ଣ ଲୋନ୍ ସ୍କିମ୍ ବାହାରିଛି ?

ଚ଼ଇତା : ଛେଳି ଲୋନ୍ ଆସିଥିଲା ଯେ.... ।

ମାଧନନା : (ପରିହାସ ଛଳରେ) ତା'ହେଲେ ତୁ ଶିଘ୍ର ଛେଳି ଲୋନ୍‌ପାଇଁ ଦରଖାସ୍ତ କର । ଆମେ ପଛେ ମେନେଜର ବାବୁଙ୍କୁ ତୋପାଇଁ ପଦେ କହିବା ।

ଚ଼ଇତା : ସିଏ କ'ଣ ଶୁଣିବ କି ନନା ?

ମାଧ ନନା : କାହିଁକି ଶୁଣିବ ନାହିଁ ?

ଚ଼ଇତା : ମୁଁ ପରା ସେ ଲୋନ୍‌ଟା ବି ନେଇସାରିଛି ।

ହରି ଅଜା : ତେବେ ସେ ଛେଳି ଗଲା କୁଆଡ଼େ ?

କେତକୀ : ଯିବ ଆଉ କୁଆଡ଼େ ? ମେନେଜର ବାବୁ ଆଉ ପଶୁଡ଼ାକ୍ତର ବାବୁଙ୍କ ସାମନାରେ ସେଇ ହାଟରେ ବେପାରିକି ବିକିଦେଇ ଘରକୁ ବାବୁହେଇ ଫେରିଆସିଲା । କୋଉ କୂଳ ଆଉ ରଖିଛି କି ?

ବେଙ୍ଗ ଜେଜେ : ସେଇଥିପାଇଁ ମେନେଜରବାବୁ ତତେ ଆଉ ଲୋନ୍ ଦେଉନି କିରେ ?

ମାଧନନା : ଆଉ ସେଇଥିପାଇଁ ଚୂଇତା ଆମର ମେନେଜର ବାବୁଙ୍କୁ ମାରିବାକୁ ବାହାରିଛି ।

ହରି ଅଜା : (ହସି ହସି) ଆଉ ସେଇଥିପାଇଁ ବି କେତକୀ ଆମର ଚୂଇତାକୁ ଛାଡ଼ି ବସ୍ ଧରିବାକୁ ବାହରିଛି । (ସମସ୍ତେ ହସିଲେ)

ବେଙ୍ଗ ଜେଜେ : କିରେ ଏମିତି ଏମିତି ତୁ କ'ଣ ସବୁ ଲୋନ୍ ନେଇ ହଜମ କରି ଦେଉଛୁ ?

କେତକୀ : ମେନେଜର ବାବୁ କହୁଛନ୍ତି, ଇଏ ଯଦି ଲୋନ୍ ଟଙ୍କାକୁ ଠିକ୍ ଭାବରେ ଖର୍ଚ୍ଚ କରିଥାଆନ୍ତା, ତେବେ, ଆମର ଏବେ ଦିନକୁ ଦୁଇଶହ ଟଙ୍କା ଘରକୁ ଆସୁଥାଆନ୍ତା ।

ଚୂଇତା : ହଉ, ହେଲା, ହେଲା । ତୁ ଟିକେ....

କେତକୀ : (ବିରକ୍ତ ଭାବରେ) କ'ଣ ହେଲା, ହେଲା, ହଉମ ! ମୁଁ କଣ ମିଛ କହୁଛି ? ଦିନକୁ ଦୁଇଶହ ଟଙ୍କା ଗଲା କୁଆଡ଼େ ? ମୋ ଛୁଆ ଏବେ ଓପାସ ରହୁଛନ୍ତି ।

ଚୂଇତା : ହଉ, ଯାହା ହେବାରତ ହେଲାଣି । ଏବେ ଘରକୁ ଚାଲ । ମୁଁ ଆଜିଠାରୁ ତୋ କଥାମାନି କାମ ଦାମ କରି ଚଳିବି । ନହେଲେ ତୋ ନାଁରେ ଗୋଟେ ଲୋନ୍....?

କେତକୀ : (ଚମକି ପଡ଼ିବା ଭଙ୍ଗୀରେ) ଲୋନ୍....? ନା, ନା । ସେକଥା କେବେ ହେବ ନାହିଁ । ଲୋନ୍ ଟଙ୍କା ତୁମ ମୁହଁରେ ଲାଗିଯାଇଛି ନା ? ମୁଁ ଜମାଘରକୁ ଯିବି ନାହିଁ ।

ମାଧ ନନା : (ପରିହାସରେ) ଆରେ ବସ୍‌ଟା ତ ଆସିଗଲାଣି ନା କଣ? ଜେଜେ ଟିକେ ଦେଖିଲ ?

ଚୂଇତା : ସେମିତି ଆଉ କୁହନି ନନା । ତୁମେ ଟିକେ ତାକୁ ବୁଝେଇ ଦିଅ । ସେ ଏବେ ଘରକୁ ଚାଲୁ ।

ହରି ଅଜା : ହଉ, ହଉ । କେତକୀ ! ତୁ ଏବେ ଘରକୁ ଯା' । ଚୂଇତା ଏଣିକି ତୋ

କଥାରେ ଚଳିବ । ଆରେ କ'ଣ କହୁଛୁ, ଚଇତା ?

ଚଇତା : ହଉ, ହେଲା ।

କେତକୀ : ହେଲା, ନୁହେଁ । ଏବେଠାରୁ ମୁଁ ଯାହା କହିବି ସେଇଯା ହେବ ।

ଚଇତା : (ଧିର ସ୍ୱରରେ) ହବ ।

କେତକୀ : ଏମିତି ଚୁପ୍ କରି କହିଦେଉଛ କାହିଁକି ? ସମସ୍ତେ ଶୁଣିପାରିଲା ପରି ବଡ଼ପାଟିରେ କହୁନ ?

ଚଇତା : ହଁ, ବାବା, ହବ, ହବ । ଏବେ ଘରକୁ ଚାଲ ।

ମାଧ ନନା : ଏତେଦିନ ଚଇତା ପାଖରେ ସମସ୍ତେ ହାର୍ ମାନୁଥିଲେ । ହେଲେ ଆମ ଚଇତାଟି ଆଜି କେତକୀ ପାଖରେ ହାର ମାନିଗଲା । (କେତକୀ, ଚଇତା ସମସ୍ତଙ୍କୁ ପ୍ରଣାମ କରି ପ୍ରସ୍ଥାନ କଲେ । ସମସ୍ତେ ହସିଲେ । ଦୂରରୁ ମଟର ହର୍ଣ୍ଣ ଶୁଭିଲା । ଅଳ୍ପ ସମୟ ପରେ ମଟର ରହିବାର ଶବ୍ଦ । ହାତ ବ୍ୟାଗ୍ ଧରି ଦୋକାନ ଭିତରକୁ ପ୍ରବେଶ କଲା କ୍ଷେତ୍ରବାସୀ । ସ୍ଥାନୀୟ ଲୋକ । ବିଜୁଳୀ ବିଭାଗରେ ହେଲ୍ପର୍ କାମ କରେ । ସମସ୍ତଙ୍କୁ ନମସ୍କାର କଲା । ମାଧନନା ଆରମ୍ଭ କଲେ.....)

ମାଧ ନନା : ଆରେ କ୍ଷେତ୍ରବାସୀ । କ'ଣ କୁଆଡ଼େ ବାହାରକୁ ଯାଇଥିଲୁ କିରେ ?

କ୍ଷେତ୍ରବାସୀ : ହଁ, ନାନ । ଆମ ଅଫିସ୍‌ରୁ ଡ଼ାକରା ଆସିଥିଲା ଯେ ବଡ଼ିଭୋରୁ ଉଠି ବାହାରି ଯାଇଥିଲି ।

ବେଙ୍ଗ ଭେଜେ : କ'ଣ ହଠାତ୍ ଇମିତି ତୋର ଅଫିସ କାମ ପଡ଼ିଗଲା କିରେ ?

କ୍ଷେତ୍ରବାସୀ : ନାଇଁମ ଭେଜେ । ମୋର କ'ଣ ଗୋଟେ ଅଫିସ କାମ । ବିଜୁଳୀ ବିଭାଗର ହେଲ୍ପର୍ ଲୋକ । ମୋଠି ପୁଣି କାହାର କ'ଣ କାମ ଥିବ ? ହେଲେ ଅସଲ କାମ ହେଲା, ଖୋଜାପଡ଼ିଥିଲା ଆମ ଲାଇନ୍‌ମ୍ୟାନ୍ ମିଶ୍ରବାବୁଙ୍କୁ ।

ହରି ଅଜା : ଆରେ ହଁ ତ । ମିଶ୍ରବାବୁଙ୍କର ତ କ'ଣ ଦେଖାନାହିଁ ?

କ୍ଷେତ୍ରବାସୀ : କି କଥା ଯେ ତୁମେ କୁହ ନନା ? ସିଏ କ'ଣ ଅଛନ୍ତି ? ପାଞ୍ଚ ତାରିଖଦିନ ଆମେ ଦି'ଜଣ ସାଙ୍ଗହୋଇ ଅଫିସ୍‌କୁ ଯାଇଥିଲୁ । ଅଫିସ୍‌ରେ କାମ ଦାମ କଥା ବୁଝି ଦରମାନେଇ ମୁଁ ଫେରିଆସିଲି । ସିଏ କହିଲେ କି ଟିକେ ଘରକୁ ଯାଇ, ଘରେ ଟଙ୍କାପଇସା ଦେଇ ପିଲାମାନଙ୍କ ସାଙ୍ଗରେ ଦିନେ ଓଳିଏ କଟେଇ ଫେରି ଆସିବେ ।

ହେଲେ ସେ ଦିନରୁ ଯାଇଛନ୍ତି ଯେ ଆଜି ଆସି ପଚିଶ ତାରିଖ ହେଲା ।

ବେଙ୍ଗ ଢେଙ୍କେ : ଆରେ ଏ ମାସକର ପୁରା ଦରମା ତ ତାଙ୍କୁ ଆଉ ମିଳିବନି । ସିଏ ଚଳିବେ କେମିତି ?

କ୍ଷେତ୍ରବାସୀ : (ହସି ହସି) କି କଥା କହୁଛ ଢେଙ୍କେ ? ସିଏ ଡ଼ିଉଟିରେ ନାହାନ୍ତି ବୋଲି ଅଫିସ କେମିତି ଜାଣିବ ?

ମାଧନନା : କାହିଁକି ? ତୁ କହି ଦେଉନୁ ?

କ୍ଷେତ୍ରବାସୀ : (ଆଶ୍ଚର୍ଯ୍ୟ ଭାବରେ) ମୁଁ କହିଦେବି ? (ହସି) ହେଇଟି ଢେଙ୍କେ ! ମୁଁ କହିଦେଲେ, ମୋ ପିଲାଛୁଆ ଗଡ଼ିମରିବେ । ମତେ ବଦଳି କରିନେଇ କୋଉଠି ପକେଇଦେବେ, ତାର ଠିକ୍ ଠିକଣା ନାହିଁ ।

ହରି ଅଜା : ଆମ ମିଶ୍ରବାବୁଙ୍କର କ'ଣ ଏତେ ପାବାର ନା କ'ଣ ?

କ୍ଷେତ୍ରବାସୀ : ତାଙ୍କ ପାବାର କଥା କିଏ ପଚାରେ ? ଅସଲ ହେଉଚି ଆମ ବାବୁଙ୍କ ପାବାର କଥା । ସିଏ ବି ତ ସେମିତି ମାସକୁ ପନ୍ଦର ଦିନ ଘରକୁ ପଳାନ୍ତି । ତେଣୁ ସେ ମିଶ୍ରବାବୁଙ୍କୁ ଆଉ କ'ଣ ଧରିବେ ?

ମାଧ ନନା : ତା'ହେଲେ ଏକଥାଟା ଠିକ୍ ସେଇ ''ଆଲୋ ମୁଦୁରୀ'' କଥାପରି ।

କ୍ଷେତ୍ରବାସୀ : ହଁ ନନା ! ଠିକ୍ କହିଛ । ବାବୁଙ୍କର ପନ୍ଦର ଦିନ ହେଲେ ମିଶ୍ରବାବୁଙ୍କର କୋଡ଼ିଏ ଦିନ ।

ବେଙ୍ଗ ଢେଙ୍କେ : ସେଇଥିପାଇଁ ଗୋଟେ ଗାଁ ଥରେ ଅନ୍ଧାର ହେଲେ ମାସକପରେ ସେଠି ପୁଣି ଆଲୁଅ ଜଳେ ।

କ୍ଷେତ୍ରବାସୀ : ସବୁତ ଜାଣୁଛ । ଆଉ ପଚାରୁଛ କ'ଣ ? ମୁଁ ଏବେ ଯାଉଛି, ନନା । (ପ୍ରସ୍ଥାନ । ଏହି ସମୟରେ ଆଉ ଦୁଇଜଣ ଦୋକାନ ଭିତରକୁ ପ୍ରବେଶ କଲେ । ଜଣେ ଯୁବକ ଓ ଜଣେ ଯୁବତୀ । ସେମାନେ ପ୍ରବେଶ କରୁ କରୁ.....)

ହରି ଅଜା : ଆରେ, ରମେଶ କିରେ ? ଆ, ଆ, ଭିତରକୁ ଆ । ଆରେ ଭୁବନେଶ୍ୱରରୁ କେତେବେଳେ ଆସିଲୁ ?

ରମେଶ : (ଜଣକ ପରେ ଜଣକୁ ପ୍ରମାଣ କରୁ କରୁ) ମୁଁ ଏଇ ବସରୁ ଓହ୍ଲେଇଲି ଅଜା ।

ବେଙ୍ଗ ଢେଙ୍କେ : ଆରେ ବାପା ! ଆଉ ସବୁ ଭଲ ତ ?

ମାଧନନା : ଗାଁରେ କେତେଦିନ ରହିବୁ, ନା ?

ରମେଶ : ରହି ହେଉଛି କୋଉଠି ନନା ? ତେଣେ ଏତେ କାମ ଯେ କହିହେବନି । କଳ୍ପନା ! ହରି ଅଜା, ବେଙ୍ଗଜେଜେ ଆଉ ମାଧନନାଙ୍କୁ ପ୍ରଣାମ କର ।

କଳ୍ପନା : (ଜଣକପରେ ଜଣକୁ) ପ୍ରଣାମ ଅଜା !

ହରି ଅଜା : ବୁଢ଼ୀଟିଏ ହେଇଥା ।

କଳ୍ପନା : ପ୍ରଣାମ ଜେଜେ ।

ବେଙ୍ଗ ଜେଜେ : ପାଚିଲାବାଳରେ ସିନ୍ଦୁର ନା ।

କଳ୍ପନା : ପ୍ରଣାମ ନନା ।

ମାଧନନା : ଭଗବାନ ମଙ୍ଗଳ କରନ୍ତୁ ।

ହରି ଅଜା : ଆରେ ରମେଶ ! ଏ ଝିଅଟି କିଏ ଆମକୁ ତ ଜଣେଇଲୁ ନାହିଁ ?

ରମେଶ : ଜାଣିବ, ଜାଣିବ ଜେଜେ, ଅଲ୍‌ବତ୍ ଜାଣିବ ।

ବେଙ୍ଗ ଜେଜେ : ଆରେ ତାଙ୍କ ଘର କେଉଁଠି ?

ହରି ଅଜା : ସିଏ କରେ କ'ଣ ?

ମାଧ ନନା : ତୋ ସାଙ୍ଗରେ କୁଆଡ଼େ ଆସିଛନ୍ତି ?

ରମେଶ : ତାଙ୍କ ଘର ଏଇ ଆମ ଓଡ଼ିଶାରେ ।

କଳ୍ପନା : ମୋ ନାମ କଳ୍ପନା.... ।

ରମେଶ : ସେ ହେଉଛନ୍ତି, ମୋର ପାର୍ଟନର...ମାନେ ବିଜିନେସ୍ ପାର୍ଟନର ।

ହରି ଅଜା : ଆରେ କି ପାର୍ଟନର ?

ରମେଶ : ବିଜିନେସ୍ ମାନେ ବ୍ୟବସାୟ ।

ବେଙ୍ଗ ଜେଜେ : ତୁ ତାହେଲେ କିଛି ବେପାର ବଣିଜ କଲୁଣି ନା ?

ରମେଶ : କଲିଣି ମାନେ ? ବେଶ୍ କିଛିଦିନ ହେବ ଆରମ୍ଭ କଲିଣି.... ।

ମାଧ ନନା : ତୋ ବାପା ତ କହୁଥିଲେ, ତୁ କୁଆଡ଼େ ବେକାରହୋଇ ଖାଲିଟାରେ ଭୁବନେଶ୍ୱରରେ ବସିଛୁ ।

ରମେଶ : ତୁମେ ତାଙ୍କକଥା ଶୁଣିବନି ନନା । ସେ ହେଲେ ପୁରୁଣା କାଳିଆ ଲୋକ ।

କଳ୍ପନା : ଆମର ଏ ନୂଆ ପ୍ରକାର ବ୍ୟବସାୟ ବିଷୟରେ ସେ କିଛି ବୋଧହୁଏ ବୁଝିପାରୁ ନାହାନ୍ତି ।

ହରି ଅଜା : ତୁମ ବ୍ୟବସାୟଟା ଏମିତି କ'ଣ କି ?

ରମେଶ : ସେ ବଡ଼ ଗହନ କଥା, ଅଜା ।

ବେଙ୍ଗ ଜେଜେ : ତେବେ ଟିକେ ଆମକୁ କହିଥା ।

କଞ୍ଚନା : ସେଟା ଗୋଟେ ସପ୍ଲାଏ ବିଜିନେସ୍ ।

ମାଧ ନନା : ହଁ, ହଁ । ମୁଁ ଶୁଣିଛି ଏଇ ସପ୍ଲାଇ କାରବାର ଖୁବ୍ ଭଲ । ଜିନିଷନେଇ ଅଫିସମାନଙ୍କରେ ଥୋଇ ଦେଇ ଆସିଲେ, ଟଙ୍କା ବଳେବଳେ ଆସି ଘରେ ପହଞ୍ଚିଯିବ ।

ରମେଶ : ଇଏ ସେ ସପ୍ଲାଇ ନୁହେଁ, ନନା ।

ହରି ଅଜା : ଆଉ ? ଏଟା କି ସପ୍ଲାଏ କିରେ ?

କଞ୍ଚା : ଏଇ ମଣିଷ ସପ୍ଲାଏ ।

ବେଙ୍ଗ ଜେଜେ : ଆରେ ମଣିଷ ସପ୍ଲାଏ ପୁଣି କ'ଣ ?

ରମେଶ : ଶୁଣ ! ଆଜିକାଲି ଆମ ଦେଶରେ ତ ବହୁତ ଦଳ ?

ବେଙ୍ଗ ଜେଜେ : ଆରେ କି ଦଳ ? କୋଉଦଳ କଥା କହୁଛୁ ?

ରମେଶ : ଏଇବା ରାଜନିତୀ କରୁଥିବା ଦଳ ।

ବେଙ୍ଗ ଜେଜେ : ହଁ, ହଁ । ତା ତ ଆମେ ଦେଖୁଛୁ ।

କଞ୍ଚନା : ବହୁତ ଦଳମାନେ.... ।

ରମେଶ : ମାନେ ବହୁତ ନେତା... ।

କଞ୍ଚନା : ବହୁତ ନେତାମାନେ... ।

ରମେଶ : ବହୁତ ସଭା ।

କଞ୍ଚନା : ସଭା ପୂର୍ବରୁ ରଙ୍ଗିନ ପତକାଧରି ବହୁତ ଶୋଭାଯାତ୍ରା......

ରମେଶ : ବହୁତ ଶୋଭାଯାତ୍ରା ମାନେ ବହୁତ ଲୋକ ।

କଞ୍ଚନା : ସହରଟା ତ ଯେତୁ ଟିଏ କୁ ସେତୁଟିଏ ।

ରମେଶ : ତେବେ, ଏତେ ଲୋକ ଆସିବେ କୁଆଡୁ ?

କଞ୍ଚନା : ସେଇ ଲୋକ ଯୋଗଡକରି ନେତାମାନଙ୍କୁ ସପ୍ଲାଏ କରିବାହେଉଛି, ଆମ ବ୍ୟବସାୟ ।

ହରି ଅଜା : ଆରେ ସେଥିରେ ଲୋକ କ'ଣ ପାଆନ୍ତି ?

ରମେଶ : ମଜୁରୀ ।

ବେଙ୍ଗ ଜେଜେ : ଆଉ ତୁମେ ?

କଞ୍ଚନା : କମିଶନ୍ ।

ମାଧ ନନା : ଦଳ କ'ଣ ଦିଏ ?

କଳ୍ପନା : ବ୍ୟାଜ୍ । ବ୍ୟାନର୍ ।
ହରି ଅଜା : ଡମରୁ ?
ରମେଶ : ଠେଙ୍ଗା ।
ବେଙ୍ଗ ଭେଜେ : ଆରେ ଠେଙ୍ଗା କ'ଣ ?
କଳ୍ପନା : ପତାକା ଧରିବାକୁ ।
ମାଧ ନନା : ଆରେ ତୁମେ ବି ଏତେ ଲୋକ କେଉଁଠୁ ଆଣ ?
ରମେଶ : ଏତେ ଲୋକ କ'ଣ ନନା ?
କଳ୍ପନା : (ଅଳ୍ପ ହସି) ଏ ସଭାପାଇଁ ଯିଏ.....
ରମେଶ : ସେ ଶୋଭାଯାତ୍ରା ପାଇଁ ବି ସେଇ ।
କଳ୍ପନା : ଯାଙ୍କ ପାଇଁ ସାଇକଲ୍ ପ୍ରସେଶନ୍ ଯିଏ କରନ୍ତି.....
ରମେଶ : ତାଙ୍କ ପାଇଁ ମଶାଲ୍ ଶୋଭାଯାତ୍ରାରେ ସେଇ ବାହାରନ୍ତି ।
କଳ୍ପନା : ଯିଏ କୁହନ୍ତି ଇଏ ଜୟ...... ।
ରମେଶ : ସେଇ ବି କୁହନ୍ତି ସିଏ ଜୟ ।
ହରି ଅଜା : ବାଃ । ତୁତ ଗୋଟେ ଖାଣ୍ଟି ବ୍ୟବସାୟ ଧରିଛୁରେ ରମେଶ ।
ରମେଶ : ସବୁ ତୁମ କଲ୍ୟାଣରୁ ଅଜା । ହଉ ଆମେ ତେବେ ଆସୁଛୁ ।
କଳ୍ପନା : ପ୍ରଣାମ ଅଜା । ପ୍ରଣାମ ଭେଜେ । ପ୍ରଣାମ ନନା । (ଚାଲିଗଲେ)
ବେଙ୍ଗ ଭେଜେ : (ସେମାନଙ୍କ ଯିବା ବାଟକୁ ଚାହିଁ) ପିଲାଟା ମୁଣ୍ଡକୁ ଏତେଦିନକେ ବୁଦ୍ଧି ପଶିଲା ।
ମାଧ ନନା : କି ବୁଦ୍ଧି ?
ହରି ଅଜା : ଏଇ ବ୍ୟବସାୟ କରିବା ବୁଦ୍ଧି ।
ମାଧ ନନା : ଏଇଟା କି ବ୍ୟବସାୟ ମ ।
ହରି ଅଜା : ଏଇଟା ପରା ଗୋଟେ ଖାଣ୍ଟି ବ୍ୟବସାୟ ।
ମାଧନନା : ନା । ଏଇଟା ବ୍ୟବସାୟ ନୁହେଁ ।
ବେଙ୍ଗ ଭେଜେ : ଆଉ ?
ମାଧ ନନା : ଗୋଟେ ମସ୍ତବଡ଼ ଟାଉଟରୀ ।
ବେଙ୍ଗ ଭେଜେ : ଟାଉଟରୀ ଆଉ କ'ଣ ? ସେମାନେ ଲୋକ ମାଗିଲେ..... ।
ହରି ଅଜା : ଏମାନେ ଲୋକ ଯୋଗାଡ଼ କଲେ.....
ବେଙ୍ଗ ଭେଜେ : ଲୋକ କାମ କଲେ.....

ହରି ଅଜା : କାମ ବାବଦକୁ ମଜୁରୀ ନେଲେ.....
ମାଧ ନନା : (ଥଟ୍ଟାଳିଆ ଭାବରେ) ଆଉ କାମପାଇଁ ଲୋକ ଯୋଗାଡ଼ କରି । ପ୍ରସେସନ୍ ପାଇଁ ଠେଙ୍ଗାଦେଇ ଆମ ରମେଶବାବୁ ଆଉ କଳ୍ପନା ଦେବୀ ମାଗଣା ମାଗଣାରେ କମିଶନ୍ ମାରିନେଲେ ।
ହରି ଅଜା : ଆରେ ସତେ ତ ?
ମାଧ ନନା : ଇଏ ବି ଗୋଟେ ଖାଣ୍ଟି ଟାଉଟରୀ । (ହସିହସି ପରିହାସ ସ୍ୱରରେ)
ବେଙ୍ଗ ଢେଙ୍କେ : ଆମ ଇସ୍କୁଲ ପଡ଼ିଆ ସଭା ଭଳିଆ ।
ହରି ଅଜା : ହିଁ । ସେଇଆ ନୁହେଁ ଆଉ କ'ଣ ?
କେଶବ : (ପ୍ରବେଶ କଲେ । ସେ ବାହାରେ ରୁହନ୍ତି । ଦୋକାନରେ ପଶୁ ପଶୁ) ନମସ୍କାର ଅଜା ! ନମସ୍କାର ଢେଙ୍କେ ! ନମସ୍କାର ନନା ! ସ୍କୁଲ ପଡ଼ିଆରେ କିଭଳିଆ ସଭା ହୋଇ ଥିଲା କି ? କେବେ ହୋଇଥିଲା ?
ହରି ଅଜା : ଆରେ କେଶବ କିରେ ? ଆ, ଆ, ବସ । କେତେବେଳେ ଆସିଲୁ ।
ବେଙ୍ଗ ଢେଙ୍କେ : ତୁ କ'ଣ ସେ ସଭାକଥା କିଛି ଜାଣିନୁ ?
କେଶବ : ନା ଢେଙ୍କେ । ମୁଁ ଟିକେ ଅଫିସ କାମରେ ବାହାରକୁ ଚାଲିଯାଇଥିଲି । ସେ ସଭାରେ କ'ଣ ହେଇଥିଲା ଟିକେ କହିଲ ?
ମାଧ ନନା : ଆରେ କେଶବ ! ତୁମେମାନେ ତ ପାଠସାଠ ପଢି ଗାଁ ମାଟିରୁ ଯାଇ ଦୂରରେ ରହିଲ ।
ହରି ଅଜା : ଏଠି କ'ଣ ସବୁ ହେଉଛି, ସେ କଥା ବୁଝିବାକୁ ତୁମକୁ ସବୁ ଆଉ ବେଳ କାହିଁ ?
କେଶବ : ହଁ, ଅଜା । ସେ କଥା ସତ । ତେବେ କଥାଟା ଟିକେ କୁହ ।
ବେଙ୍ଗ ଢେଙ୍କେ : କ'ଣ ଆଉ ସିଏ କହିବ ? ଏଇ କେଇଦିନ ତଳେ, ହଠାତ୍ ଦିନେ ସକାଳୁ ସବୁ ଗାଁରେ ଗୋଟେ ମାଇକ୍ ପ୍ରଚାର ଆରମ୍ଭ ହେଇଗଲା ।
ହରି ଅଜା : କ'ଣ ନା ଏ ଅଂଚଳର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀଙ୍କୁ ଜନଗଣଙ୍କ ତରଫରୁ....
ବେଙ୍ଗ ଢେଙ୍କେ : ଉଚ୍ଛ୍ୱସିତ ନାଗରିକ ସମ୍ବର୍ଦ୍ଧନା ଦିଆଯିବ ।
ହରି ଅଜା : ଏକଥା ଶୁଣି ଆମକୁ ବହୁତ ଖୁସି ଲାଗିଲା ।
ମାଧ ନନା : ସଭାବେଳକୁ ଆମେ ସବୁ ପ୍ରସ୍ତୁତ ହୋଇ ଆସିଗଲୁ ।
ହରି ଅଜା : ଖାଲି ଆମେ ନୁହେଁ, ଆମ ଅଞ୍ଚଳର ସବୁ ଗାଁରୁ ଅନେକ ଲୋକ

ସଭା ଦେଖିବାକୁ ଆସିଲେ ।

ବେଙ୍ଗ ଜେଜେ : ସମସ୍ତଙ୍କ ମନରେ ଥାଏ ଯେ ଯୋଗୀଆଟା ଦେଶପାଇଁ ଏତେ କରିଥିଲା...

ହରି ଅଜା : ଦେଶବାସୀ ବି ତାଙ୍କପାଇଁ କିଛି କମ୍ କାମ କରୁ ନାହାନ୍ତି ।

ମାଧ ନନା : ସରକାର ପେନ୍‌ସନ୍ ଦେଉଛନ୍ତି......

ବେଙ୍ଗ ଜେଜେ : ଲୋକେ ସମ୍ବର୍ଦ୍ଧନା ଦେଉଛନ୍ତି.....

ହରି ଅଜା : ଦେଶ ସ୍ୱେ ବର୍ଷରୁ ସ୍ୱାଧୀନ ହେଲେ ବି.......

ମାଧ ନନା : ନାଗରିକ ସମ୍ବର୍ଦ୍ଧନାଦେବା କାର୍ଯ୍ୟକ୍ରମ ଏପର୍ଯ୍ୟନ୍ତ ଚାଲୁରହିଛି ।

ହରି ଅଜା : ବାହାରେ ଆମ ଦେଶ ।

ବେଙ୍ଗ ଜେଜେ : ଦେଶବାସୀ ସଂଗ୍ରାମୀମାନଙ୍କୁ ଏମିତି ସମ୍ମାନିତ କଲେ....

ମାଧ ନନା : ଦେଶ ପ୍ରକୃତରେ ସୁନା ହୋଇ ଯିବ ।

ବେଙ୍ଗ ଜେଜେ : ଏଇକଥା ଭାବି ଭାବି ଆମେ ସଭାକୁ ଗଲୁ ।

ହରି ଅଜା : ସଭାଘର ଆସ୍ତେ ଆସ୍ତେ ଲୋକଭିଡ଼ରେ ପୁରି ଉଠିଲା ।

କେଶବ : ତା'ପରେ ?

ହରି ଅଜା : ତା'ପରେ ଚଳସାହି ହୁରିଆ ଆଉ....

ବେଙ୍ଗ ଜେଜେ : ହାଟସାହି ନରିଆ, ଯୋଗିଆକୁ ଭଲ ଲୁଗା ପଟା ପିନ୍ଧେଇ...

ହରି ଅଜା : ତା'ବେକରେ ଗୋଟେ ଫୁଲମାଳ ପକେଇ.....

ବେଙ୍ଗ ଜେଜେ : ତାକୁ ସଭାମଞ୍ଚ ଆଡ଼କୁ ଆଣିଲେ ।

ମାଧ ନନା : ସିଏତ ଓଡ଼ିଶାର ଜଣେ ଖ୍ୟାତନାମା ସ୍ୱାଧୀନତା ସଂଗ୍ରାମୀ...

ହରି ଅଜା : ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ପୋଲିସ ହାତରୁ ବହୁତ ମାଡ଼ ଖାଇଥିଲା ।

ବେଙ୍ଗ ଜେଜେ : ବହୁତ ଦିନ ଜେଲ୍ ଖଟିଥିଲା ।

କେଶବ : ବ୍ରିଟିଶ୍ ସରକାରକୁ ଦୋହଲାଇ ଦେଇଥିଲା ବୋଲି ମୁଁ ବି ତ ବାପାଙ୍କ ମୁହଁରୁ ଶୁଣିଛି । ସିଏ କୁଆଡ଼େ ସେତେବେଳେ କହୁଥିଲା, "ମୁଁ ବ୍ରିଟିଶ ସରକାରକୁ ନବଖଣ୍ଡକରି ଭାଙ୍ଗିଦେବି" ।

ହରି ଅଜା : ହଁ । ସେ ଏବେ ବି ସ୍ୱାଧୀନତା ସଂଗ୍ରାମୀ ଭାବରେ କେନ୍ଦ୍ର ଆଉ ରାଜ୍ୟ ସରକାରଙ୍କ ଠାରୁ ଭତ୍ତା ପାଉଛି ।

ବେଙ୍ଗ ଜେଜେ : ତାକୁ ଦେଖି ଲୋକେ ଆନନ୍ଦରେ ତାଳି ମାରିଲେ ।

ମାଧ ନନା : ସ୍କୁଲ୍‌ପିଲାମାନେ ଖୁସିରେ ତା' ଚାରିପାଖରେ ଘେରିଗଲେ ।
ବେଙ୍ଗ ଭେଜେ : "ଯୋଗେନ୍ଦ୍ର ସାହୁଙ୍କ ଜୟ" ବୋଲି ଧ୍ୱନି ଦେଲେ ।
ହରି ଅଢା : ସେ ଧ୍ୱନି ସତେ ଯେମିତି ଆକାଶ ପାତାଳ କମ୍ପି ଉଠିଲା । ଲୋକମାନଙ୍କ ଉତ୍ସାହ ଦେଖି ଯୋଗିଆଟି ଆନନ୍ଦରେ କାନ୍ଦି ଉଠିଲା... ।
ହରି ଅଢା : ହଠାତ୍ ଏତିକିବେଳେ କ'ଣ ହେଲା ଜାଣିଛୁ କେଶବ ?
କେଶବ : କ'ଣ ହେଲା ?
ମାଧ ନନା : ନକୁଳି ବାବୁଙ୍କ ପୁଅ, ନାତି ଆଉ ଗୁଣ୍ଡାମାନେ ଧାଇଁଆସି ଯୋଗିଆକୁ ମଞ୍ଚ ଉପରୁ ତଳକୁ ଠେଲିଦେଲେ ।
ମାଧ ନନା : ନକୁଳି ବାବୁଙ୍କ ବଡ଼ପୁଅ ବେକରେ ଫୁଲମାଳ ପକେଇ, ସେମାନେ ତାଙ୍କୁ ଆଣି ମଞ୍ଚ ଉପରେ ବସାଇ ଦେଲେ ।
କେଶବ : ଆଉ ଯୋଗିଆ ?
ହରି ଅଢା : ସେ ବିଚାରା କାନ୍ଦି କାନ୍ଦି ସେଠାରୁ ପଳେଇ ଗଲା । କେତେଲୋକ ହୋ-ହଲ୍ଲା କଲେ । ହେଲେ ଶୁଣୁଛି କିଏ ?
କେଶବ : (ଆଶ୍ଚର୍ଯ୍ୟ ହୋଇ) ଆହେ ଯେ କେମିତି ହେଲା ?
ମାଧ ନନା : ହେଲା ତ ଆଉ କେମିତି ହେଲା କ'ଣ ?
କେଶବ : ଆହେ ନକୁଳି ବାବୁଙ୍କ ବଡ଼ପୁଅ କ'ଣ କେବେ ସ୍ୱାଧୀନତା ସଂଗ୍ରାମ କରିଥିଲେ ?
ମାଧ ନନା : ଅଲବତ୍ କରିଥିଲା ।
କେଶବ : ଏକଥା ତୁମେ କହୁଛ ?
ମାଧ ନନା : କାହିଁକି ? ତତେ କ'ଣ ଶୁଭୁ ନାହିଁକି ?
ହରି ଅଢା : (ଶଙ୍କି ଯାଇ) ଆରେ ମାଧ ! (ନିମ୍ନ ସ୍ୱରରେ) ଆରେ ସେଟା କେତେବେଳେ ସ୍ୱାଧୀନତା ସଂଗ୍ରାମ କରିଥିଲାମ ।
ମାଧ ନନା : ନକୁଳିବାବୁଙ୍କ ଘରେ ବ୍ରିଟିଶ୍ ଫଉଜ ଯେତେବେଳ ଯୋଗିଆକୁ ଧରିନେଇ ବୁଟ୍‌ରେ ପିଟୁଥିଲେ, ସିଏ ସେତେବେଳେ ତାଙ୍କ ବୁଟ୍‌କୁ ଝାଡ଼ିଝୁଡ଼ି ସଫା କରୁଥିଲା ।
କେଶବ : (ବିରକ୍ତ ଓ ଆଶ୍ଚର୍ଯ୍ୟ ହୋଇ) ତାଙ୍କ ସଂଗ୍ରାମ କଥା ଛାଡ଼ । ଏତେଗୁଡ଼େ ଲୋକ ସଭାକୁ ଆସିଥିଲେ ବୋଲି କହୁଛ । କିନ୍ତୁ ସିଏ ମିଟିଙ୍ଗବେଳେ

ଯେଉଁକାଣ୍ଡ କଲେ, ସେଥିରେ କେହି ବାଧା ଦେଲେ ନାହିଁ ?

ବେଙ୍ଗ ଢେଙ୍କେ : ହଁ । ଅନେକ ଲୋକ ତ ଆସିଥିଲେ । ହେଲେ, ବାବୁଘର କାଣ୍ଡ କାରଖାନା ଦେଖି ଯେଉଁ କେତେଟା ପାଟିତୁଣ୍ଡ କରୁଥିଲେ, ସେମାନେ ସବୁ ମେଣ୍ଢା ଭଳିଆ ଇଆଡେ ସିଆଡେ ଦଉଡ଼ି ପଳେଇଗଲେ । ହେଲେ ହୁରିଆ ଆଉ ନରିଆ ତାଙ୍କର ଶକ୍ତି ଅନୁସାୟୀ ଏହି ଅନ୍ୟାୟକୁ ବିରୋଧ କଲେ ।

କେଶବ : କେମିତି ?

ମାଧ ନନା : କେମିତି ଆଉ କଣ ? ବାବୁ ଘର ଲୋକଙ୍କ କଥା ନମାନି ହୁରିଆ ମଞ୍ଚ ଉପରକୁ ଉଠିଯାଇ ମାଇକ୍‌ଟାକୁ ଧରିପକାଇଲା । ତାପରେ ଆରମ୍ଭ କରିଦେଲା ତା କାମ । ସ୍ୱାଧୀନତା ସଂଗ୍ରାମବେଳେ ଯେଗେନ୍ଦ୍ରନାଥ ସାହୁ ଓରଫ ଯୋଗିଆ କେମିତି ନିଜ ଜୀବନକୁ ପାଣି ଛଡ଼େଇ ଦେଶପାଇଁ କାମ କରୁଥିଲା, ସେ କଥା ଲୋକମାନଙ୍କୁ କହିବାକୁ ଲାଗିଲା । ମାତ୍ର ଏତିକିବେଳେ ବାବୁଘର ଗୁଣ୍ଡାମାନେ ତା' ଉପରେ ଆକ୍ରମଣ କଲେ ।

କେଶବ : ଆଉ ସେଠାରେ ଥିବା ଲୋକମାନେ.... ?

ମାଧ ନନା : (ବିରକ୍ତ ଭାବ ଦେଖାଇ) ନିର୍ଜୀବ । ସେଗୁଡ଼ିକ ସବୁ ନିର୍ଜୀବ ପରି ଜଳଜଳ ହୋଇ ଅନେଇ ଦେଖୁଥିଲେ । କିନ୍ତୁ ନରିଆ ଆସି ହୁରିଆ ପାଖରେ ଠିଆହୋଇ ତାକୁ ସାହାଯ୍ୟ କରିବାକୁ ଲାଗିଲା ।

କେଶବ : ଆଚ୍ଛା, ଆଚ୍ଛା । ନରିଆ କ'ଣ କଲା ?

ମାଧ ନନା : ମଞ୍ଚ ଉପରେ ଠିଆହୋଇ ସିଏ ହୁରିଆକୁ ମାଡ଼ରୁ ରକ୍ଷା କରିବାକୁ ଚେଷ୍ଟା କରୁଥିଲା । ହେଲେ ବାବୁଘର ଗୁଣ୍ଡାମାନେ ଦୁଇଜଣଙ୍କୁ ମଞ୍ଚ ଉପରୁ ଟେକିଟେକି ତଳକୁ ନେଇଗଲେ ।

କେଶବ : ସେଇଠୁ.... ?

ବେଙ୍ଗ ଢେଙ୍କେ : ନରିଆ, ହୁରିଆ କ'ଣ ଡ଼ରିବା ପାତ୍ର ? ସେମାନେ ସେମିତି ବାବୁଘର ବିରୁଦ୍ଧରେ କହି ଚାଲିଥିଲେ ।

କେଶବ : ତା'ପରେ.... ?

ମାଧ ନନା : ତା'ପରେ ଆଉ କ'ଣ ? ତା'ପରେ ଆଗରୁ ଯାହା ହେଉଥିଲା, ଏବେ ବି ସେଇୟା ହେଲା ।

ବେଙ୍ଗ ଜେଜେ : କଥାଟାକୁ ଟିକେ ଖୋଲିକରି କହନ୍ତୁ ।

ମାଧ ନନା : ଆଗରୁ ସଂଗ୍ରାମୀମାନଙ୍କୁ ଯେମିତି ପୋଲିସ ଧରି ନେଉଥିଲା, ଏଥର ବି ସେମିତି ନରିଆ ଆଉ ହୁରିଆକୁ ପୋଲିସ ଧରିନେଇଗଲା ।

କେଶବ : ଆଉ ଅନ୍ୟମାନେ....... ?

ମାଧ ନନା : (ରାଗ ଓ ବିରକ୍ତ ଭାବରେ) ସମସ୍ତେ ଚୁପ୍‌ଚାପ୍ ବସି ସଭାରେ ଭାଷଣ ଶୁଣିଲେ ।

ବେଙ୍ଗ ଜେଜେ : ଆଉ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଉପରେ ଅତ୍ୟାଚାର କରୁଥିବା ଲୋକମାନେ ମଞ୍ଚ ଉପରେ ବସି ସଂଗ୍ରାମୀ ବୋଲାଇଲେ ।

କେଶବ : ଆହେ କିକଥା ଆଜି କାନ ଶୁଣିଲା ?

ମାଧ ନନା : କେଶବ ! ତୁମ କାନ ଆଜିଗୋଟେ ଖାଣ୍ଟିକଥା ଶୁଣିଲା ।

କେଶବ : ମାନେ ?

ମାଧ ନନା : ମାନେ ଆଉ କ'ଣ ?

ହରି ଅଜା : ଇଂରେଜ ଫଉଜଙ୍କ ବୁକୁଚାବୁହାମାନେ ସଂଗ୍ରାମୀ ହୋଇଗଲେ ।

ବେଙ୍ଗ ଜେଜେ : ଅସଲି ସଂଗ୍ରାମୀମାନେ ସଭାମଞ୍ଚରୁ ତଣ୍ଟିଆଖାଇ, ଘର କଣରେ ମୁହଁ ଲୁଚେଇଲେ ।

ହରି ଅଜା : ସେତେବେଳେ ସଂଗ୍ରାମୀମାନଙ୍କୁ ଯିଏ ମାରୁଥିଲା......

ବେଙ୍ଗ ଜେଜେ : ଏବେ ସିଏ ଅସଲି ସଂଗ୍ରାମୀ ବୋଲାଇଲା ।

ମାଧ ନନା : ଏବେ ଖାଲି ତାର ଭେକ ବଦଳିଗଲା ।

କେଶବ : ସବୁ ଟାଉଟରୀ ଖାଣ୍ଟି ହୋଇଗଲା ।

ମାଧ ନନା : ଆଉ ଏଇ ଖାଣ୍ଟି ସଂଗ୍ରାମୀ, ଖାଣ୍ଟି ଉକୁଣୀମାରି ଔଷଧପରି ସମସ୍ତଙ୍କ ମୁଣ୍ଡକୁ ଚନ୍ଦା କରିବାରେ ଲାଗିଲା ।

ହରି ଅଜା : ବାଃ, ବାଃ ।

ବେଙ୍ଗ ଜେଜେ : ତୁ କିନ୍ତୁ ଗୋଟେ ଖାଣ୍ଟି କଥା କହିଲୁ ।

(ସମସ୍ତେ ହସିଲେ । ଦୂରକୁ ଉକୁଣୀମାରି ଔଷଧ ବିକାଳିମାନଙ୍କର ସେ ସ୍ୱର ବାଜିବାକୁ ଲାଗିଲା । ସେହି ଅନୁପାତରେ ମଞ୍ଚ କ୍ରମେ କ୍ରମେ ବାଦ୍ୟ ସଂଗୀତରେ ମୂର୍ଚ୍ଛନା ପାଖେଇ ଆସିଲା ଓ କ୍ରମେକ୍ରମେ ଅନ୍ଧାର ହୋଇ ଆସିଲା ଓ ଯବନିକା ନଇଁନଇଁ ଆସିଲା ।)

-ସମାପ୍ତ-

# ଅନୁରାଧା

ଯୌତୁକ ରାକ୍ଷସର ସର୍ବଗ୍ରାସୀ କ୍ଷୁଧା ଏବେ ଆଧୁନିକ ସମାଜ ଜୀବନକୁ କ୍ଷତବିକ୍ଷତ କରୁଛି । ସେହି କ୍ଷୁଧାର ଅନଳ, ସୁନ୍ଦର, ମଧୁର ପାରିବାରିକ ଜୀବନରେ ଭରିଦେଉଛି ତୀବ୍ର ହଳାହଳ ବିଷ । ଉକ୍ତ ବିଷ କ୍ରମେ ଉତ୍କଟତର ହୋଇ ଧ୍ୱଂସ କରୁଛି ପରିବାରକୁ । ସେଥିରୁ ରକ୍ଷାପାଇବାପାଇଁ ପ୍ରତି ପରିବାରର ମୁଖ୍ୟ — ସନ୍ତୋଷବାବୁମାନେ ଠିକ୍ ସମୟରେ ଯୌତୁକ ମୋହର ଉର୍ଦ୍ଧ୍ୱକୁ ଉଠି, ପରିବାରମାନଙ୍କୁ ଧ୍ୱଂସ ମୁଖରୁ ରକ୍ଷାକରନ୍ତୁ - ଏହି ବାର୍ତ୍ତାର ପ୍ରଚାରପାଇଁ ରଚିତ ଉକ୍ତ କ୍ଷୁଦ୍ର ନାଟିକା ।

## ଭୂମିକାରେ

| ପୁରୁଷ | ସ୍ତ୍ରୀ |
|---|---|
| ସନ୍ତୋଷ (ପ୍ରୌଢ଼) | ସାବିତ୍ରୀ (ପ୍ରୌଢ଼ା) |
| ପବନ (ପ୍ରୌଢ଼) | ନିରୁପମା (ଯୁବତୀ) |
| ଅତନୁ (ଯୁବକ) | ଅନୁରାଧା (ଯୁବତୀ) |

ସନ୍ତୋଷବାବୁଙ୍କ ବୈଠକ ଖାନା । ବୈଠକଖାନା କହିଲେ, ଯାହା ବୁଝାଏ, ତାହା ଏଠାରେ ଦେଖିବାକୁ ମିଳିବ ନାହିଁ । ଗୋଟିଏ ସାନ କୋଠରୀ । ଗୋଟିଏ ପାଖରେ ଚଉପୋଷଟିଏ । ତାଉପରେ ସାଧାରଣ ବିଛଣା । ପୁରୁଣା କାଳିଆ ସାନ ଟେବୁଲଟିଏ ଓ ଦୁଇ ତିନୋଟି ପୁରୁଣା ଠେଲ ଚୌକିଟାକାଠ ଚୌକି । କାନ୍ଥରେ ଅଲଗୁଣୀ, ଗୋଟେ ଇମ୍ପାକାଠ ବେଞ୍ଚ ଉପରେ ଧାନବସ୍ତା । ଧୂଳି, ମୂଷାମଟି,ଅଧାଜଳା ବିଡ଼ିରେ ଘର ଭର୍ତ୍ତି । ପୁଅ ବାହାଘର ପରେ ସନ୍ତୋଷବାବୁ ଏଇଠି ଶୁଆବସା କରନ୍ତି । ନିଜର ଶୋଇବା ଘରଟି ପୁଅକୁ ଛାଡ଼ିଦେଇଛନ୍ତି ।

ଘରେ ସନ୍ତୋଷବାବୁଙ୍କ ସ୍ତ୍ରୀ ଓ ତିନିଥର ମେଟ୍ରିକ ପରୀକ୍ଷାଦେଇ ଫେଲ୍ ହୋଇଥିବା ଝିଅ ନିରୂପମା । ସାଧାରଣ ସ୍ୱାସ୍ଥ୍ୟ ଓ ରୂପର ଝିଅ । ପୁଅ ଅତନୁ ଇଂରାଜୀରେ ଏମ୍.ଏ. ପାଶ୍ କରି ଟ୫୦,୦୦୦.୦୦ଙ୍କା ଲାଞ୍ଚଦେଇ ମାସିକ ଟ୩୦୦ଙ୍କା ଦରମାରେ ସଦ୍ୟ ଉଦ୍‌ଘାଟିତ ଏକ ଗ୍ରାମୀଣ ଆଞ୍ଚଳିକ ମହାବିଦ୍ୟାଳୟରେ ଗତ ଏକ ସପ୍ତାହ ହେଲା ଅଧ୍ୟାପକ ରୂପେ କାର୍ଯ୍ୟରତ ।

ବୋହୂ ଅନୁରୋଧ ମାତ୍ର ୧୫ ଦିନ ତଳେ ବାହାହୋଇ ଏଘରକୁ ଆସିଛି । ଓଡ଼ିଆ ସାହିତ୍ୟରେ ଏମ୍.ଏ. ପାଶ୍ । ଧନୀ ପିତାଙ୍କର ଅଲିଅଳି କନ୍ୟା । ଦୀର୍ଘାଙ୍ଗୀ, ମାତ୍ର କୃଷ୍ଣା । ସେଥିପାଇଁ ଯଉତୁକ ତାଲିକା ଅତ୍ୟନ୍ତଦୀର୍ଘ ।

ସନ୍ତୋଷବାବୁ ବୈଠକଖାନାରେ ଖବର କାଗଜଧରି ବସିଥିଲେ । ବାହାରୁ ଡ଼ାକ ଶୁଭିଲା......

ପବନ : (ବାହାରୁ) ସନ୍ତୋଷବାବୁ ! ସନ୍ତୋଷବାବୁ ଘରେ ଅଛନ୍ତି ?.......

ସନ୍ତୋଷ : ଆସନ୍ତୁ ! ଭିତରକୁ ଆସନ୍ତୁ ।

ପବନ : (ପ୍ରବେଶ କରି) ନମସ୍କାର ସନ୍ତୋଷବାବୁ ।

ସନ୍ତୋଷ : ନମସ୍କାର ।

ପବନ : କ'ଣ ଖବରକାଗଜ ପଢ଼ା ଚାଲିଚି ?

ସନ୍ତୋଷ : ନା । ଏମିତି ଟିକେ ଦେଖୁଥିଲି ।

ପବନ : କ'ଣ ସବୁ ସେଥିରେ ବାହାରିଚି କି ?

ସନ୍ତୋଷ : କହିପାରିବିନି ।

ପବନ : ଆପଣଙ୍କୁ କଂଗ୍ରାଚୁଲେସନ ଜଣେଇବା ଡ଼େରିହେଇଗଲା ।

ସନ୍ତୋଷ : କେଉଁ ବିଷୟରେ.... ?

ପବନ : ଏଇ ଆପଣଙ୍କ ପୁଅ ବାହାଘର ବିଷୟରେ.... ?

ସନ୍ତୋଷ : ଓହୋ ! ତା'ହେଲେ କଂଗ୍ରାଚୁଲେସନ୍ ମୋ ପୁଅକୁ ଜଣାନ୍ତୁ ।

ପବନ : ତାକୁ ତ ତା ସାଙ୍ଗମାନେ ଜଣାଇଥିବେ, ଜଣାଉଥିବେ ଆଉ ଜଣାଇବେ ।

ସନ୍ତୋଷ : ଆପଣ ମୋର ବଂଧୁ ବୋଲି, ପୁଅ ବାହାଘର କଂଗ୍ରାଜୁଲେସନ ମତେ ଜଣେଇବାକୁ ଆସିଛନ୍ତି ?

ପବନ୍ : ଆହେ ନା'ମ । ପୁଅର ବାହାଘର ପାଇଁ କଂଗ୍ରାଚୁଲେସନ୍ ତାର ପ୍ରାପ୍ୟ । ଆଉ ସବୁ କଥାପାଇଁ କଂଗ୍ରାଚୁଲେସନ୍ ତ ଆପଣଙ୍କର ପ୍ରାପ୍ୟ ।

ସନ୍ତୋଷ : ମାନେ..... ?

ପବନ : ମାନେ ଆଉ କ'ଣ ? ଆଚ୍ଛା ସନ୍ତୋଷବାବୁ । ରିସେପ୍ସନ୍ ଦିନ ସଜାସଜି ପାଇଁ ଡ଼େକୋରେଟର୍ କେଉଠୁଁ ଆଣିଥିଲେ । ଓହୋ । ସତେ ଯେମିତି ସେ ଆପଣଙ୍କ ଘରକୁ ସ୍ୱର୍ଗପୁରୀରେ ପରିଣତ କରିଦେଇଥିଲା ।

ସନ୍ତୋଷ : ହେଇଥିବ..... ।

ପବନ : ଆହେ ହେଇଥିବ କ'ଣ ? ହେଇଥିଲା ନା.... ? ସେ ଯେଉଁ ମଣ୍ଡପଟା ବନେଇ ତା'ଉପରେ ଆମ ବୋହୂକୁ ବସେଇଥିଲା... ? ଆହା ହା........ କି ସୁନ୍ଦର ହୋଇନଥିଲାମ ସତେ.... ? ଫୁଲ ଦେଇ ସଜା ହୋଇଥିବା ମଣ୍ଡପଟା ଠିକ୍ ପୁଷ୍ପକ ବିମାନ ପରି ଦେଖାଯାଉଥିଲା । ଆଉ ବିଜୁଳି ଆଲୁଅରେ ସେଟା ଏମିତି ଦେଖାଯାଉଥିଲା ଯେ, ସତେ ଯେମିତି ଆମ ବୋହୂ ପରୀରାଇଜରୁ ଆକାଶପଥରେ ତୁମ ଅଗଣାକୁ ଓହ୍ଲେଇ ଆସୁଛନ୍ତି.... । ଆଃ.....କି ସୁନ୍ଦର ହୋଇଥିଲାମ ସତେ ?

ସନ୍ତୋଷ : ହୋଇଥିବ, ହୋଇଥିବ ।

ପବନ : ସେଇ ସାଜ ସଜା, ଯାହା କୁହନ୍ତୁ ସନ୍ତୋଷବାବୁ, ଆମ ଏ ଅଞ୍ଚଳରେ ଆଗରୁ ଆଦୌ କେବେ ହୋଇନି କି ଭବିଷ୍ୟତରେ ମଧ ହୋଇପାରିବନି ।

ସନ୍ତୋଷ : ହୋଇଥିବ ।

ପବନ : ସେଥିରେ କେତେ ଲାଗିଲା ?

ସନ୍ତୋଷ : କ'ଣ... ?

ପବନ : ଖର୍ଚ୍ଚ ।

ସନ୍ତୋଷ : କହି ପାରିବିନି ।

ପବନ : (ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହୋଇ) ମାନେ..... ?

ସନ୍ତୋଷ : ମାନେ ଆଉ କ'ଣ.... ? ଏଇ ବାବଦକୁ କେତେ ଖର୍ଚ୍ଚ..... ?

ପବନ : ଓହୋ । ବାବଦ ବାବଦର ଖର୍ଚ୍ଚକୁ ଅଲଗା ଅଲଗା କରି ମନେ ରଖିନାହାନ୍ତି ।

ସନ୍ତୋଷ : ହଁ, ସେଇୟା ।

ପବନ : ଆଉ ଯେଉଁ ବାଜାବାଲା ଆଣିଥିଲେ..... ?

ସନ୍ତୋଷ : ହଁ ବାଜାବାଲା..... ।

ପବନ : ସେ ବାଜାବାଲାତ ଆମ ଏଇ ପାଖଆଖର ନୁହଁନ୍ତି ? କେଉଁଠୁ ଅଣେଇ ଥିଲେ ତାଙ୍କୁ.... ?

ସନ୍ତୋଷ : କହିପାରବି ନାହିଁ ।

ପବନ : ସେ କଥା କିଏ ବୁଝୁଥିଲା କି ?

ସନ୍ତୋଷ : ସେ କଥା.....ମାନେ....ଏଇ.....ଆମ...... ।

ପବନ : ହଁ, ହଁ । ସେ ଗୁଡ଼ିକ ତ ପିଲାଛୁଆଙ୍କ କଥା । ପୁଅ ନିଶ୍ଚୟ ସେ ଯୋଗାଡ଼ଟା କରିଥିବ ।

ସନ୍ତୋଷ : ହଁ, ମାନେ.....ସିଏ କରିଥିଲା ।

ପବନ : ଆଉ ସେ ଯେଉଁ ଟୋକା ଟୋକୀ ହଳକ...... ?

ସନ୍ତୋଷ : କାହା କଥା କହୁଛନ୍ତି ?

ପବନ : ସେଇ ମ..... ? ଯିଏ ବାଜାର ତାଳେତାଳେ ଗୀତ ଗାଉଥିଲେ । (ଗାଇବା ଭଙ୍ଗୀରେ) "ତୁମେ ମୋର ପୁନେଇ ଜହ୍ନ" ପେର୍ "ଏମିତି ରାତି....." ।

ସନ୍ତୋଷ : ହଉ ଥାଉ ଥାଉ । ଆଉ ସ୍ୱର ଲମ୍ୱେଇ ଗୀତ ଗାଇବା ଦରକାର ନାହିଁ ।

ପବନ : ନାଇମ ସନ୍ତୋଷବାବୁ । କି ସୁନ୍ଦର ଗାଉଥିଲେ ସେମାନେ । ଆଉ କି ସୁନ୍ଦର ସେ ବାଜା । ମୋର ତ ଖାଲି ସେତେବେଳେ ନାଚିବାକୁ ମନ ହେଉଥିଲା ।

ସନ୍ତୋଷ : ନାଚିଲେ ନାହିଁ ?

ପବନ : କି କଥା କହୁଛନ୍ତି ? ଆଉ କ'ଣ ନାଚିବାକୁ ବୟସ ଅଛି ?

ସନ୍ତୋଷ : ଏବେ କହିଲେ ଯେ ?

ପବନ : ମୁଁ ଖାଲି ଆପଣଙ୍କ ବ୍ୟବସ୍ଥାକୁ ତାରିଫ୍ କରୁଥିଲି ।

ସନ୍ତୋଷ : ହଉ ଧନ୍ୟବାଦ୍ ।

ପବନ : ସେଥିପାଇଁ କେତେ ?
ସନ୍ତୋଷ : କ'ଣ ଏଇ ଧନ୍ୟବାଦ୍ ପାଇଁ ?
ପବନ : ନା, ବାଜା ଆଉ ଗୀତ ପାଇଁ ।
ସନ୍ତୋଷ : ଜାଣେ ନା ।
ପବନ : ସେ ଯୋଗାଡ଼ ତ ପୁଅ କରିଥିବ । ହେଲେ ପେମେଣ୍ଟ ଟା କ'ଣ... ?
ସନ୍ତୋଷ : ଛାଡ଼ନ୍ତୁ ସେ କଥା ।
ପବନ : ଆଉ ଭୋଜି ? ସମସ୍ତେ କହୁଛନ୍ତି ଏମିତିକା ଭୋଜି ଏ ଖଣ୍ଡମଣ୍ଡଳରେ କେହି ଦେଇନାହାନ୍ତି କି ଦେଇପାରିବେ ନାହିଁ ।
ସନ୍ତୋଷ : ଆଚ୍ଛା, ଅଚ୍ଛା ।
ପବନ : ମାଛ କେଉଁଠୁ ଆଣିଥିଲେ ?
ସନ୍ତୋଷ : ଜାଣେନି ।
ପବନ : ଆପଣ ଜାଣନ୍ତି ନି ? ରସଗୋଲା କେଉଁଠୁ ମଗେଇଥିଲେ ?
ସନ୍ତୋଷ : କହିପାରିବି ନାହିଁ ।
ପବନ : କହିପାରିବେ ନି ? ପୂଜାରୀ କେଉଁଠୁ ଅଣେଇଥିଲେ ?
ସନ୍ତୋଷ : ମନେପଡୁନି ।
ପବନ : ଏଇ କାଲିକା କଥା । ମନେ ପଡୁନି ?
ସନ୍ତୋଷ : ନା ।
ପବନ : ମାଂସ ?
ସନ୍ତୋଷ : ମୁଁ ଖାଏନା ।
ପବନ : ମୁଁ ଆପଣଙ୍କ ଖାଇବା କଥା ପଚାରୁନି । ସେ ଦିନ ଭୋଜିରେ ଯେଉଁ ମାଂସ ତରକାରୀ ପରଶା ହେଲା, ସେଇ ମାଂସ କଥା ପଚାରୁଛି ।
ସନ୍ତୋଷ : ଭୋଜିରେ ମାଂସ ହେଇଥିଲା କି ?
ପବନ : ଭୋଜିରେ ମାଂସ ହେବା କଥା ଆପଣ ଜାଣନ୍ତି ନାହିଁ ?
ସନ୍ତୋଷ : ନା.....ମାନେ.....ମୁଁ ସେଦିନ....ମାନେ.....ଉପବାସ ଥିଲି ତ........ ।
ପବନ : ଆପଣ ସେଦିନ ଉପବାସ ଥିଲେ ? କାହିଁକି ?
ସନ୍ତୋଷ : ପୁଅ ବାହାଘର ଦିନ ବାପ ଉପବାସ ରୁହେ ବୋଲି ଆପଣ ଜାଣନ୍ତି ନି ?
ପବନ : ମୁଁ ପୁଅର ଚଉଠୀ ଭୋଜୀ କଥା ପଚାରୁଛି ।
ସନ୍ତୋଷ : ହଁ, ମ । ମୁଁ ସେଇକଥା କହୁଛି ।

ପବନ : ଆପଣ ସେଦିନ କାହିଁକି ଉପବାସ ଥିଲେ ?

ସନ୍ତୋଷ : ରହିବି ନାହିଁ ? କିହୋ ଆମ ହିନ୍ଦୁଧର୍ମରେ ଖାଇବାଟା ଗୋଟେ ଯଜ୍ଞ ସାଙ୍ଗରେ ସମାନ । ମୋ ଘରେ ଏତେ ଲୋକ ପତ୍ର ପକେଇବେ, ଆଉ ମୁଁ ଖାଇପିଇ ହେଣ୍ଡିମାରି ବୁଲିବି ?

ପବନ : ବୁଲିବା କଥା କିଏ କହୁଛି ?

ସନ୍ତୋଷ : ଆପଣ ତାହାହେଲେ ଆଉ କି କଥା କହୁଛନ୍ତି ?

ପବନ : ମୁଁ କହୁଛି ପୁଅ ବାହାଘର ପରେ ଆପଣ ଦେଇଥିବା ଚଉଠୀ ଭୋଜୀର ମାଂସ ତରକାରୀ କଥା ।

ସନ୍ତୋଷ : ଓ ହୋ । ମାଂସ ତରକାରୀ କଥା ନା ?

ପବନ : ହଁ ।

ସନ୍ତୋଷ : ହଁ, ହଁ । ମାଂସ ତରକାରୀ ଖୁବ୍ ଭଲ ହୋଇଥିଲା ।

ପବନ : ମୁଁ ପଚାରୁଛି ମାଂସ କେଉଁଠୁ ମଗେଇଥିଲେ ?

ସନ୍ତୋଷ : (ଅଳ୍ପ ହସି) ଜାଣେନି ।

ପବନ : କେମିତି ?

ସନ୍ତୋଷ : ସତ କହିବି ?

ପବନ : କୁହନ୍ତୁ ।

ସନ୍ତୋଷ : ମୁଁ ସେ ଭୋଜି କଥା କିଛି ଜାଣେନି ।

ପବନ : ଆଚ୍ଛା ତେବେ କେତେ ଲାଗିଲା ।

ସନ୍ତୋଷ : କ'ଣ ?

ପବନ : ଖର୍ଚ୍ଚ.... ?

ସନ୍ତୋଷ : (ଢେପ ଢୋକି) ଏଇ....ଧରନ୍ତୁ....ମାନେ.....ପଚିଶ.....ତିରିଶ । ଏତେ ଲୋକ ଖାଇଲେ ? ଖର୍ଚ୍ଚ ମାତ୍ର ପଚିଶ...ତିରିଶ ? ଆମ ଅନୁମାନଟା କ'ଣ ଏତେ ଭୁଲ ?

ସନ୍ତୋଷ : ଆପଣଙ୍କର ଅନୁମାନ କେତେ.... ?

ପବନ : ବହୁତ ବେଶୀ ।

ସନ୍ତୋଷ : ତଥାପି ଟିକେ ଶୁଣେ ?

ପବନ : ସତୁରୀ, ଅଶିରୁ କମ ହେବନି ।

ସନ୍ତୋଷ : ହୋଇପାରେ..... ।

ପବନ : ମାନେ.... ?
ସନ୍ତୋଷ : ମାନେ ଆଉ କ'ଣ ?
ପବନ : ମାନେ ଏଇ ଭୋଜିରେ ବନ୍ଦୋବସ୍ତ କ'ଣ ଆପଣ କରି ନଥିଲେ କି ?
ସନ୍ତୋଷ : (ଈଷତ ଲାଜରା ହୋଇ) ନା ।
ପବନ : ତେବେ..... ?
ସନ୍ତୋଷ : ଆପଣଙ୍କ ଅନୁମାନ ଠିକ୍ ।
ପବନ : ଆପଣଙ୍କ ଘରେ ଆମମାନଙ୍କୁ ଭୋଜି ଦେବାପାଇଁ ବି ଆପଣ ସମୁଧୀଙ୍କ ଉପରେ ଦାବି କରିଥିଲେ ?
ସନ୍ତୋଷ : ନା ।
ପବନ : ତେବେ.... ?
ସନ୍ତୋଷ : ଦାବି ନୁହେଁ ।
ପବନ : ଆଉ କ'ଣ.... ?
ସନ୍ତୋଷ : ଏ ବିଷୟଟି ଖାଲି ଯାହା ମୁଁ ପତ୍ରରେ ଉଲ୍ଲେଖ କରିଥିଲି ।
ପବନ : ପତ୍ର......ମାନେ ?
ସନ୍ତୋଷ : ଏଇ ଚିଠି, ପତ୍ର ।
ପବନ : ତା'ହେଲେ ସେଟାତ ଚିଠି ନୁହେଁ, ଯୌତୁକ ଆଦାୟ ପାଇଁ ଏକ ବାବିପତ୍ର ଥିଲା ।
ସନ୍ତୋଷ : ନା, ମୋ ସମୁଧୀ ତାକୁ ସେପରି ଭାବରେ ଗ୍ରହଣ କରିନାହାନ୍ତି ।
ପବନ : କେତେ ଲେଖିଥିଲେ ?
ସନ୍ତୋଷ : ଏକ ।
ପବନ : ମାନେ ? ଟିକେ ଖୋଲି କୁହନ୍ତୁ ।
ସନ୍ତୋଷ : ଏକ ଲକ୍ଷ ।
ପବନ : ତେବେ ସେଥିରୁ ବି ପଚିଶ, ତିରିଶ ମାରିଦେଲେ ?
ସନ୍ତୋଷ : କହିଲି ତ ମୋ ସମୁଧୀ ତାକୁ ସେପରି ଭାବି ନାହାନ୍ତି ।
ପବନ : ତେବେ ଆଉ କେଉଁଥିରୁ କାଟି ଦେଇଥିବେ ।
ସନ୍ତୋଷ : ଆରେ ନାନା । ସେ ତା କରିନାହାନ୍ତି ।
ପବନ : କାହିଁକି ତାହା କରି ନାହାନ୍ତି ?
ସନ୍ତୋଷ : (ନିମ୍ନ ସ୍ୱରରେ) ତାଙ୍କ ଝିଅ ଦେଖିବାକୁ ଟିକେ....

ପବନ : କ'ଣ ଅସୁନ୍ଦରୀ.... ?
ସନ୍ତୋଷ : ନା ।
ପବନ : ଛୋଟୀ ?
ସନ୍ତୋଷ : ନା ।
ପବନ : କାଣୀ ?
ସନ୍ତୋଷ : ନା ।
ପବନ : କୁଜୀ ?
ସନ୍ତୋଷ : ନା, ନା ।
ପବନ : ଆଉ ତେବେ ? କେଉଁଥିପାଇଁ ତାଙ୍କର ଏ ଦାନୀକର୍ଣ୍ଣ ଅବତାର ?
ସନ୍ତୋଷ : ଝିଅ ଇଷତ ଶ୍ୟାମାଙ୍ଗୀ ।
ପବନ : ସେଇଥି ପାଇଁ ଏତେ ଦାମ୍ ।
ସନ୍ତୋଷ : ଆପଣଙ୍କର କ'ଣ ଗଲା ?
ପବନ : ଯାଇନାହିଁ । ଯିବ ।
ସନ୍ତୋଷ : କଣ ଯିବ ?
ପବନ : ମାନ, ସମ୍ମାନ ।
ସନ୍ତୋଷ : ମାନେ..... ?
ପବନ : ଯୌତୁକ ଆଇନ୍ ।
ସନ୍ତୋଷ : ଭୁଲିଯାଆନ୍ତୁ ପବନବାବୁ ।
ପବନ : କ'ଣ ଭୁଲିଯିବି ?
ସନ୍ତୋଷ : ମୁଁ ଯାହା କହିଗଲି ।
ପବନ : ହଁ, ହଁ । ମୁଁ ସବୁ ଭୁଲି ଗଲି ।
ସନ୍ତୋଷ : କ'ଣ ଭୁଲିଗଲେ ?
ପବନ : ଏଇ ଆପଣ ଯାହା କହିଲେ ?
ସନ୍ତୋଷ : ମୁଁ କ'ଣ କହିଲି ?
ପବନ : ଏଇଯେଉଁ ଭୋଜିଖର୍ଚ୍ଚ ବାବଦକୁ ଏକ ଲକ୍ଷ...... ।
ସନ୍ତୋଷ : ସବୁ ତ ମନେ ରଖିଛନ୍ତି । ଆଉ ଭୁଲିଲେ କେମିତି ?
ପବନ : ଆପଣ ବେଧଡ଼କ ରୁହନ୍ତୁ ସନ୍ତୋଷ ବାବୁ । କୌଣସି ପରିସ୍ଥିତିରେ, କାହାରି ଆଗରେ ଆଉ ଏକଥା ବାହାରିବ ନାହିଁ ।

ସନ୍ତୋଷ : ଆପଣଙ୍କୁ ଅଶେଷ ଅଶେଷ ଧନ୍ୟବାଦ ।

ପବନ : ତା'ହେଲେ ମୁଁ ଉଠେଁ ?

ସନ୍ତୋଷ : (ତରବରରେ ନମସ୍କାର କରି) ନମସ୍କାର । ଆରେ ଆପଣ ଆସି ଚାଲିଯିବାକୁ ବାହାରିଲେଣି । କପେ ଚା ବି ମୁହଁରେ ଦେଲେ ନାହିଁ । କି କଥା ଇଏ । ଆଚ୍ଛା ବାହାରିଲେଣି ଯେତେବେଳେ, ଯାଆନ୍ତୁ । ଆଉ କେତେବେଳେ ଆସି ଖାଇଯିବେ କିନ୍ତୁ..... ।

ପବନ : ଆଚ୍ଛା, ଆଚ୍ଛା, ହଉ, ହଉ, ହେଇ, ହେଇ । ନିମନ୍ତ୍ରଣ ଦେଲେଣି ଯେତେବେଳେ ଆସିବାକୁ ତ ପଡ଼ିବ । ବର୍ତ୍ତମାନ ଆସେ । (ବାହାରକୁ ଗଲେ । ସନ୍ତୋଷ ବାବୁ ପୁନଶ୍ଚ ଖବର କାଗଜଟା ଧରି ପଢିବାକୁ ଉପକ୍ରମ କରୁଛନ୍ତି, ଏତିକି ବେଳେ ଭିତରୁ ଡ଼ାକିଡ଼ାକି ପ୍ରବେଶ କଲା ଝିଅ ନିରୂପମା ।)

ନିରୂପମା : (ଭିତରୁ) ବାପା, ବାପା ! (ପ୍ରବେଶ କରି) ତୁମେ ଏଠି ଚୁପ୍‌ଚାପ ବସିଛ । ମୁଁ ଡ଼ାକି ଡ଼ାକି ଥକିଲିଣି ।

ସନ୍ତୋଷ : ମୁଁ ଏଠି ଚୁପ୍ ଚାପ୍ ବସିନଥିଲି କି ତୁମତେ ଡ଼ାକିଡ଼ାକି ଆଦୌ ଥକି ନାହୁଁ ।

ନିରୂପମା : ତୁମେ ଚୁପ୍ ଚାପ୍ ବସି ନଥିଲତ, ଆଉ କ'ଣ କରୁଥିଲ ?

ସନ୍ତୋଷ : ପବନବାବୁ ଆସିଥିଲେ । ତାଙ୍କ ସାଙ୍ଗରେ ବସି ଟିକେ କଥାବାର୍ତ୍ତା ହେଉଥିଲି ।

ନିରୂପମା : କୋଉ ପବନବାବୁ ମ ?

ସନ୍ତୋଷ : ଏଇ ଆମ ପବନବାବୁ ମ..... । ସେଦିନ ଯିଏ..... ।

ନିରୂପମା : ଓ ! ପବନା । ସେ ପବନାଟା ସାଙ୍ଗରେ କଥାବାର୍ତ୍ତାରେ କ'ଣ ଏମିତି ମଜି ଯାଇଥିଲ ?

ସନ୍ତୋଷ : ସିଏ ଆମ ବାହାଘର ଭୋଜିକୁ ଭାରି ତାରିଫ୍ କରୁଥିଲା ।

ନିରୂପମା : ଥାଉ, ଥାଉ, ସେତିକି ଥାଉ । ସେ ଟାଉଟର୍‌ଟା କଥା ତୁମକୁ ଭାରି ସୁଆଦିଆ ଲାଗିଥିବ । ଏଣେ ଘରେ କଣ ହେଲାଣି ତୁମକୁ କିଛି ଜଣା ଅଛି କି ନାହିଁ ।

ସନ୍ତୋଷ : ଘରେ କ'ଣ ହେଲାଣି, ମାନେ ?

ନିରୂପମା : ମାନେ ଆଉ କ'ଣ ? ତୁମେ ଖାଲି ଦାଣଘରେ ବସି ପବନା ସାଙ୍ଗରେ ତୋଫାନି କଥାବାର୍ତ୍ତା କରୁଥାଅ ।

ସନ୍ତୋଷ : ଆରେ ଘରେ କ'ଣ ହେଲାଣି, ସେକଥା ତୁ ଟିକେ ମତେ କହୁ ନାହୁଁ ?

ନିରୂପମା : ହବ ଆଉ କ'ଣ ? ଭାଇ ଘରଛାଡ଼ି କଲେଜ ହଷ୍ଟେଲ୍‌ରେ ଯାଇ ରହିବାକୁ ବାହାରିଲାଣି ।

ସନ୍ତୋଷ : ହଷ୍ଟେଲ୍ ? କିରେ ତାର ପରା ପାଠପଢ଼ା ସରି ସେ ଏବେ ଲେକଚରର୍ ହେଇ ଗଲାଣି । ପୁଣି କାହିଁକି ହଷ୍ଟେଲ୍‌କୁ ଯିବ ?

ନିରୂପମା : ତୁମେ କ'ଣ କିଛି ବୁଝିପାରୁନ ?

ସନ୍ତୋଷ : ମତେ କିଏ ବୁଝେଉଚ୍ଚି କି ?

ନିରୂପମା : କାହିଁକି ? ବୋଉ କ'ଣ ତୁମକୁ କିଛି କହିନି ?

ସନ୍ତୋଷ : ସେତ ମତେ ଅନେକ କଥା କହିଛି । ତୁ ଏବେ କୋଉ କଥାଟା କହୁଛୁ, ମୁଁ କେମିତି ଜାଣିବି ?

ନିରୂପମା : ମୁଁ ଆଉ ତୁମକୁ ପାରିବିନି । ବୋଉକୁ ଡ଼ାକୁଛି ।

ସନ୍ତୋଷ : ଚ଼ଞ୍ଚଳ ଡ଼ାକ୍ । (ନିରୂପମା ଭିତରକୁ ଗଲା । ପ୍ରବେଶ କଲେ ନବ ବିବାହିତା ବୋହୂ ଅନୁରାଧା । ଉଚ୍ଚଶିକ୍ଷିତା । ଧନି ବାପର କନ୍ୟା । ପରିଧାନ ପାଟଶାଢୀ । କିଞ୍ଚିତ ବିବ୍ରତ ପରି ସ୍ପଷ୍ଟ ବାରିହେଉଛି ।)

ଅନୁରାଧା : ବାପା !

ସନ୍ତୋଷ : କ'ଣ ମା ?

ଅନୁରାଧା : କଥାଟିଏ କୁହନ୍ତି ?

ସନ୍ତୋଷ : କି କଥା, ମା ?

ଅନୁରାଧା : ରାଗିବେ ନାହିଁ ତ ?

ସନ୍ତୋଷ : ଏ ଘରେ ସମସ୍ତେ ମୋ ଉପରେ ରାଗନ୍ତି ମା । ମୋର କାହାରି ଉପରେ ରାଗିବାର ଅଧିକାର ନାହିଁ ।

ଅନୁରାଧା : ଡ଼ନ୍‌ଲପ୍ ସୋଫାଟାକୁ.....

ସନ୍ତୋଷ : (ସାମାନ୍ୟ ଉତ୍ତେଜିତ ସ୍ୱରରେ) କ'ଣ କଲେ ? (ବଡ଼ପାଟିରେ ବାହାର ଉଦ୍ଦେଶ୍ୟରେ) ଆରେ ସେ ଡ଼ନ୍‌ଲପ୍ ସୋଫାକୁ କ'ଣ କରୁଛ ? ଜାଣିଛ ତା' ଦାମ କେତେ ?

ଅନୁରାଧା : ସେମାନେ ସେଟାକୁ ଦଉଡ଼ିରେ ବାନ୍ଧି ଡିଙ୍କି ଘର ଚାଳରେ ଝୁଲେଇ ଦେଉଛନ୍ତି ।

ସନ୍ତୋଷ : (ଉତ୍ତେଜିତ ହୋଇ) ମାନେ..... ? ସୋଫାକୁ.....ମାନେ ଦଉଡ଼ିରେ

ବାନ୍ଧି ପୁରା ଚାଳରେ...... ?

ଅନୁରାଧା : ଆଉ ଯାଙ୍କ ହିରୋହଣ୍ଡା ମଟର ସାଇକେଲ୍‌ଟା ଗୁହାଳେ ଥୁଆ ହେଉଛି ।

ସନ୍ତୋଷ : (ବୋହୂକୁ ଲକ୍ଷକରି କୁଣ୍ଠିତ ଅପରାଧି ପରି) ନା, ନା । ତା କେମିତି ହେବ, ଡନ୍‌ଲପ୍ ସୋଫା ଚାଳରେ କେମିତି ଝୁଲିବ ? ଆଉ ମୋଟର ସାଇକଲ୍....ସେଇ ପଚାଶହଜାର ଟଙ୍କା ଗାଡ଼ିଟା ଗୁହାଳ ଘରେ ରହିବ ? ନା....ଏଇଟା.... ।

ଅନୁରାଧା : ଘରେ କେଉଁଠି ପକେଇବାକୁ ତ ଜାଗା ନାହିଁ ।

ସନ୍ତୋଷ : (ସମସ୍ୟାକୁ ହୃଦୟଙ୍ଗମ କରି) ତା ବୋଲି ଚାଳରେ.... ?

ଅତନୁ : (ଉତ୍ତେଜିତ ଅବସ୍ଥାରେ ପ୍ରବେଶ କରି) ସେଟାକୁ ତୁମ ଘରକୁ ପଠେଇ ଦେବାର ବନ୍ଦୋବସ୍ତ କରୁଛି ।

ଅନୁରାଧା : (ସାମାନ୍ୟ ନୀରବତା ପରେ) ମାଗି ଆଣି ପୁଣି ଫେରାଇ ଦେବେ କାହିଁକି ?

ଅତନୁ : କ'ଣ କହିଲ । କ'ଣ କହିଲ ? ମାଗଆଣି ? କିଏ ତୁମ ଘରକୁ ସୋଫା ମାଗିବାକୁ ଯାଇଥିଲା ?

ଅନୁରାଧା : (ଅଳ୍ପ ହସି) ନା, ନା । କେହିଯାଇ ଆମ ଘରୁ ସୋଫା ମାଗି ଆଣିନଥିଲେ । ଯୌତୁକ ତାଲିକାରେ ପଞ୍ଚମ ସ୍ଥାନରେ ସୋଫା ବିଷୟରେ ଉଲ୍ଲେଖ ଥିଲା ।

ଅତନୁ : ବାପା..... ?

ସନ୍ତୋଷ : (ଥତମତ ହୋଇ) ନା । ଯେ....ମୁଁ....ନା.....ମ....... ସେ କିଛି ନୁହେଁ । ମୁଁ କିଛି ତାଲିକା ଫାଇଲା ପଠେଇ ନଥିଲି । ଖାଲି ଗୋଟେ.....ମାନେ.....ତାଙ୍କ ମାନସମ୍ମାନକୁ ଚାହିଁ.....ଆଉ ଆମ ମାନସମ୍ମାନକୁ ଚାହିଁ, ଏମିତି ଗୋଟେ ଚିଠି ଲେଖିଦେଇଥିଲି ।

ଅତନୁ : ତାହେଲେ......ଶେଷକୁ ତୁମେ...... ।

ସନ୍ତୋଷ : ସେ ସବୁର ଆଲୋଚନା ବର୍ତ୍ତମାନ ଥାଉ । ଆଚ୍ଛା, ଆଚ୍ଛା ଗୋଟେ କାମ କର । ସୋଫାଟା କେତେ ଦିନପାଇଁ ଟିକେ ଚାଳରେ ଝୁଲୁ । ଆମର ତ ଏଣେ ଘର ତିଆରି କାମ ଆରମ୍ଭ ହୋଇଯିବ । ସେଟା ସରିଗଲେ..... ।

ଅନୁରାଧା : (ଅନ୍ୟ ଦିଗକୁ ମୁହଁ ବୁଲେଇ ରାଗରେ) ସୋଫା ପକେଇବାକୁ ଘରେ ଜାଗା ନାହିଁ । ଆଉ ଗୋଟାକ ଉପରେ ଗୋଟେ ଜିନିଷର ଲମ୍ବା ତାଲିକା

ମୋ ବାପାଙ୍କ ପାଖକୁ ପଠାହେଉଥିଲା କାହିଁକି ?

ସନ୍ତୋଷ : ବୋହୂ ! ତୁମେ ଏପରି କହିବାଟା...... ।

ଅନୁରାଧା : ମୋର ଭୁଲ୍ ହେଇଛି, ବାପା !

ଅତନୁ : (ରାଗରେ) ଭାରି ବଡ଼ ବଡ଼ କଥା କହୁଛ ତ ? ଜାଣ, ମୁଁ ରାଗିଲେ କ'ଣ କରିପାରେ ?

ଅନୁରାଧା : (ଅଳ୍ପ ହସି) କ'ଣ ଆଉ କରିବ । କଲେଜ୍‌ରେ ପିଲାଙ୍କୁ ପାଠ ପଢାଉଛ । ରାଗିଗଲେ ସେମାନଙ୍କୁ କ୍ଲାସ୍‌ରୁ ବାହାର କରିଦେଉଥିବ । ମୁଁ ତ ତୁମର ଛାତ୍ରୀ ନୁହେଁ ଯେ ମତେ ବାହାର କରିଦେବ । ମୁଁ ତୁମର ସ୍ତ୍ରୀ, ଅର୍ଦ୍ଧାଙ୍ଗିନୀ । ତୁମ ଜୀବନର ଏକ ଅଂଶ ।

ଅତନୁ : (ରାଗରେ ବାପାଙ୍କ ଉଦ୍ଦେଶ୍ୟରେ) ମନାକରୁଛି । ତୁମେ ବାଧ୍ୟକରି ମତେ ଗୋଟେ......

ଅନୁରାଧା : (ଅଳ୍ପ ହସି)....ଜାଳିଟା ସାଙ୍ଗରେ ଧନ ଲୋଭରେ ବାହାକରିଦେଲେ ।

ନିରୁପମା : (ପ୍ରବେଶ) ଭାଉଜ ! ତୁମେ ବହୁତ ବଢ଼ି ବଢ଼ି କଥା କହୁଛ । ତୁମ ମୁହଁରେ ଟିକେ ଲଜ୍ଜା ନାହିଁ ? ତୁମେ ଏ ଘରର ଝିଅ ନା ବୋହୂ ?

ଅନୁରାଧା : (ଅଳ୍ପ ହସି) ଏଠି ବୋହୂ ହେଲେ ବି ମୋ ବାପାଙ୍କର ମୁଁ ଝିଅ । ତୁମେ ବି ତୁମ ବାପାଙ୍କର ଝିଅ । ମୁଁ ଝିଅ । ତୁମେ ଝିଅ । ତେଣୁ ତୁମେ ତ ମତେ ସମର୍ଥନ କରିବା କଥା । ହଁ ବାପା....ସୋଫା କଥାଟା....

ସନ୍ତୋଷ : ଆଚ୍ଛା ସେଟାକୁ ଏଇ ଘରେ ପକେଇବା ।

ଅନୁରାଧା : (ହସି) ଏଇ ଘରେ.....ପୁଣି ଡ଼ନ୍‌ଲପ୍ ସୋଫା..... ?

ସନ୍ତୋଷ : ନା.....ମାନେ..... । ଧରିଯିବ....ମାନେ ଜାଗା ହେଇଯିବ । ଆଗକୁ ଖରାଦିନଟା ଆସୁଛି କିନା । ମୋ ଖଟଟାକୁ ଦାଣ୍ଡ ବାରଣ୍ଡାରେ ପକେଇ ଦେଲେ, ମୁଁ ସେଇଠି ଶୁଆ ବସା କରିବି । ଆଉ ଡ଼ନ୍‌ଲପ୍ ସୋଫାଟା ଏଇଠି ପଡ଼ିବ ।

ନିରୂପମା : ଏବେ ଶ୍ୱଶୁରଙ୍କ ସାଙ୍ଗରେ ପଦକୁ ପଦ ନକରି ଘର ଭିତରକୁ ଚାଲ ।

(ଅନୁରାଧା ଓ ନିରୂପମା ଭିତରକୁ ଗଲେ । ଅତନୁ ବାହାରକୁ ଯାଉଥିଲା)

ସନ୍ତୋଷ : କିରେ ତୁ କ'ଣ ହଷ୍ଟେଲ୍‌କୁ ବାହାରିଲୁଣି..... ?

ଅତନୁ : ହଁ ।

ସନ୍ତୋଷ : କାହିଁକି ?

ଅଚନୁ : ନା.....ଏଠି..... ।
ସନ୍ତୋଷ : କଣ ଘରେ ଜାଗା ନାହିଁ ବୋଲି, ହଷ୍ଟେଲକୁ ଯାଉଛୁ ?
ଅଚନୁ : ନା ।
ସନ୍ତୋଷ : ଆଉ କ'ଣ ପିଲାମାନଙ୍କର ପାଠପଢାରେ ଅସୁବିଧା ହେଉଛି ବୋଲି ହଷ୍ଟେଲକୁ ଯାଉଛୁ ?
ଅଚନୁ : ନା ।
ସନ୍ତୋଷ : ଆଉ ତେବେ କାହିଁକି ଯାଉଛୁ ?
ଅଚନୁ : ବୋଉକୁ ପଚାର । (ପ୍ରସ୍ଥାନ)
ସାବିତ୍ରୀ : (ପ୍ରବେଶ - ସେ ସନ୍ତୋଷ ବାବୁ ଓ ଅଚନୁଙ୍କ କଥାବାର୍ତ୍ତାକୁ ଶୁଣି ପାରିଛନ୍ତି) ତୁମେ କ'ଣ କିଛି ବୁଝିପାରୁ ନାହିଁ ।
ସନ୍ତୋଷ : କୋଉ କଥା ?
ସାବିତ୍ରୀ : ଏଇ ହଷ୍ଟେଲକୁ ଯିବା କଥା ?
ସନ୍ତୋଷ : ବୁଝେଇ ଦେଲେ ସିନା ବୁଝିବି ।
ସାବିତ୍ରୀ : ହାଇରେ ଦଇବ । କି ବୁଦ୍ଧି ତୁମର କେଜାଣି ?
ସନ୍ତୋଷ : କାହିଁକି ? ମୋ ବୁଦ୍ଧି ଏମିତି କ'ଣ ଖରାପ ହୋଇଗଲା କି ?
ସାବିତ୍ରୀ : ତେବେ ବୁଝିପାରୁନ କାହିଁକି ?
ସନ୍ତୋଷ : କିଛି କହିଲେ ତ ବୁଝିବି ?
ସାବିତ୍ରୀ : ମାନେ, ଏଇ ବାହାଘରର ଦିନ ପନ୍ଦରଟା ନପୁରୁଣୁ ଘରେ ବୋହୂକୁ ଏକା ଏକା ଛାଡ଼ି ପୁଅ ବାହାରିଲେଣି ହଷ୍ଟେଲକୁ ।
ସନ୍ତୋଷ : କିହୋ ଘରେ ତୁମେ, ମୁଁ, ନାନୁ, ଆମେ ସମସ୍ତେ ଅଛନ୍ତି । ବୋହୂ ଏକା ଏକା ରହିବ କେମିତି ?
ସାବିତ୍ରୀ : ହାଇରେ ଦଇବ । ମରଣ ଯା ହେଉନାହିଁ ମତେ ?
ସନ୍ତୋଷ : ହାଁ, ହାଁ । ସେମିତି ଅମଙ୍ଗଳିଆ କଥା ତୁଣ୍ଡର ଧରନା । କଥାଟା ଖୋଲି, ପରିଷ୍କାର କରି ମତେ କୁହ ।
ସାବିତ୍ରୀ : (ନିମ୍ନ ସ୍ୱରରେ) ପୁଅ ମନକୁ ବୋହୂ ପାଉନି ।
ସନ୍ତୋଷ : ପୁଅ ଆମର ଥାଡ଼କ୍ଲାସରେ ଇଂରାଜୀ ଏମ୍.ଏ. । କିନ୍ତୁ ବୋହୂ ତ ଫାଷ୍ଟ କ୍ଲାସରେ ଓଡ଼ିଆ ଏମ୍.ଏ ।
ସାବିତ୍ରୀ : ହେଲେ କ'ଣ ହେଲା ?

ସନ୍ତୋଷ : ସିଏ ବାହାଘର ବାଟଖର୍ଚ୍ଚପାଇଁ ଯେଉଁ ଲକ୍ଷେ ଟଙ୍କା ଆଣିଥିଲା, ସେଇଥିରୁ ପଚାଶ ହଜାର ଟଙ୍କା ଲାଞ୍ଚ ଦେଇ ଇଏ ଚାକିରୀ ପାଇଲା । ବାହାଘର ଆଗରୁ ଯାହା ମାଗିଲେ, ତାହା ମିଳିଲା ।

ସାବିତ୍ରୀ : ସେଇଟା ସେମିତି କିଛି ବଡ଼କଥା ନୁହେଁ ।

ସନ୍ତୋଷ : କୋଠାଘର ଖଞ୍ଜେ କରି ଦେବାକୁ ସମୁଧୀ କହିଛନ୍ତି ।

ସାବିତ୍ରୀ : ତାଙ୍କର ଅଛି । ସିଏ ତାଙ୍କର ଝିଅପାଇଁ କରିଦେବେ । ସେଥିରେ ଆମର କ'ଣ ଅଛି ?

ସନ୍ତୋଷ : ତେବେ ଆଉ ରହିଲା କେଉଁଥିରେ ?

ସାବିତ୍ରୀ : ତୁମେ ତ ଧନ ଲୋଭରେ କାଳି ଝିଅଟାକୁ ବୋହୂକରି ଘରକୁ ଆଣିଲ ।

ସନ୍ତୋଷ : ଆଚ୍ଛା, ଆଚ୍ଛା । ମୋର ଭୁଲ୍ ହେଇଗଲା । ତେବେ ତୁମେ ତ ବୋହୂ ଦେଖିବାକୁ ମୋ ସାଙ୍ଗରେ ଯାଇଥିଲ ।

ସାବିତ୍ରୀ : ମୁଁ କ'ଣ ସେତେବେଳେ ତୁମକୁ କହିନାହିଁ ?

ସନ୍ତୋଷ : ଆଉ ସମୁଧୀଙ୍କ ଯୌତୁକ ପର୍ଦ୍ଦ ଶୁଣିଲା ପରେ.... ?

ସାବିତ୍ରୀ : ତୁମେ ତ ଦିନରାତି ବସି ଚିଠା କଲ ।

ସନ୍ତୋଷ : ତୁମେ ବି ତୁମ ଝିଅ ବାହାଘର ଖର୍ଚ୍ଚ ସେ ଚିଠାରେ ମିଶାଇଦେବାଲାଗି ସବୁବେଳେ ମୋ କାନରେ ଫୁସ୍‌ଫୁସ୍ ହେଇ ଫୋଡ଼ିଲ ।

ସାବିତ୍ରୀ : ଏବେ କିନ୍ତୁ ପୁଅ ଘରୁ ବାହାରିଯିବାକୁ ବସିଲାଣି ।

ସନ୍ତୋଷ : ଖୁବ୍ ଭଲ କଥା ।

ସାବିତ୍ରୀ : ମାନେ.... ?

ସନ୍ତୋଷ : ମାନେ ଆଉ କ'ଣ ?

ସାବିତ୍ରୀ : ତା'ବୋଲି ମୋ ପୁଅର ଜୀବନ ନଷ୍ଟ ହୋଇଯିବ ?

ସନ୍ତୋଷ : ତୁମେ ଟିକେ ଏକଥାଟା ପ୍ରଚାର କରେଇ ଦିଅ ।

ସାବିତ୍ରୀ : କୋଉ କଥା ?

ସନ୍ତୋଷ : ଏଇ ଆମ ଘରେ ଯାହା ଘଟୁଛି ?

ସାବିତ୍ରୀ : ମାନେ ପୁଅ ହଷ୍ଟେଲରେ ଯାଇ ରହିବାକୁ ବାହାରିବା କଥା ତ ?

ସନ୍ତୋଷ : ନା, ଖାଲି ସେତିକି ନୁହେଁ । ଆଉଟିକେ ବେଶୀ ।

ସାବିତ୍ରୀ : ବେଶୀ....ମାନେ ?

ସନ୍ତୋଷ : କାଳି ବୋହୂକୁ ବେ-ପସନ୍ଦ କରି ପୁଅ ଘରୁ ବାହାରି ଯିବାକୁ ଯିଧ୍

ଧରିବସିଛି ।

ସାବିତ୍ରୀ : ଏକଥା ପ୍ରଚାର ହୋଇଗଲେ ?

ସନ୍ତୋଷ : ଭଲ ହେବ ।

ସାବିତ୍ରୀ : କଣ ଭଲ ହେବ ? ଆମ ଘର କଥା ଚାରିଆଡ଼େ ଡ଼ିଙ୍ଗିଡ଼ିବି ବାଜିବ । ବାର ଲୋକ ବାର ଆଲୋଚନା କରିବେ ।

ସନ୍ତୋଷ : କରନ୍ତୁ ।

ସାବିତ୍ରୀ : ଆମ ଘରର ମାନ-ସମ୍ମାନ ଉପରେ ଆଞ୍ଚ ଆସିବନାହିଁ ?

ସନ୍ତୋଷ : ଖାଲି କ'ଣ ଆମରି ଘରର ମାନସମ୍ମାନ ଉପରେ ଆଞ୍ଚ ଆସିବ ?

ସାବିତ୍ରୀ : ଆଉ ?

ସନ୍ତୋଷ : ଆଉ ସମୁଧୀଙ୍କ ମାନସମ୍ମାନ ଉପରେ ଆଞ୍ଚ ଆସିବ ନାହିଁ ?

ସାବିତ୍ରୀ : ଆସିଲେ ବି କ'ଣ ହେବ ?

ସନ୍ତୋଷ : କ'ଣ ଆଉ ହେବ ?

ସାବିତ୍ରୀ : ତୁମେ କ'ଣ ଏମିତି କହୁଛ ? ମୁଁ କିଛି ବୁଝିପାରୁନି ?

ସନ୍ତୋଷ : ବୁଝିପାରୁନ ?

ସାବିତ୍ରୀ : ନା ।

ସନ୍ତୋଷ : ଜମା ବୁଝିପାରୁନ ?

ସାବିତ୍ରୀ : ନା ।

ସନ୍ତୋଷ : ମୋତେ ବୁଝିପାରୁନ ?

ସାବିତ୍ରୀ : (ରାଗରେ) ନା, ନା, ନା । କେତେ ବେହେଲ ହେଉଚ ? କଥାଟା ଖୋଲି କହୁନ ?

ସନ୍ତୋଷ : ଶୁଣ । ଅଳ୍ପ ଦିନ ଭିତରେ ପ୍ରଚାର ହେଇଯିବ କି ସନ୍ତୋଷ ମହାନ୍ତିଙ୍କର ଉଚ୍ଚଶିକ୍ଷିତ ପୁଅ ଚଉଠିରାତିରେ କାଳି କନିଆଁକୁ ପରିତ୍ୟାଗ କରି ଘରଛାଡ଼ି ଚାଲିଯାଇଛି । ଏକଥା ଶୁଣି ଆମ ସମୁଧୀ ବ୍ୟସ୍ତ ବିବ୍ରତ ହୋଇ ଲୋକ ପଠାଇବେ ।

ସାବିତ୍ରୀ : ସେଇ ଠୁ ?

ସନ୍ତୋଷ : ସେଇଠୁ ମୁଁ ସେ ଲୋକଙ୍କୁ ବୁଝେଇ ଶୁଝେଇ କହିବି କି ଆଜି କାଲିକା ଟୋକାତ । ଟିକେ ବିଗିଡ଼ି ଯାଇଛି । ତା'ର କଲେଜ ଯିବାଆସିବା ପାଇଁ ହିରୋହଣ୍ଡାଟା, ବର୍ଷା, ଶୀତ ଆଉ ଖରାଦିନେ ଠିକ୍ ଭାବରେ କାମରେ

ଲାଗିବନି । ସେଟା ସେମିତି କେବେ କେମିତି ଏଇ ଆଖପାଖକୁ ଯିବାପାଇଁ ଥାଉ । ପ୍ରତିଦିନ କଲେଜ ଯିବାକୁ ଖଣ୍ଡେ ମାରୁତି କାର ହେଲେ ଆମେ ତାକୁ ବୁଝେଇ ସୁଝେଇ ଘରୁ ବାହାରକୁ ଛାଡ଼ିବୁନି ।

ସାବିତ୍ରୀ : (ହସି, ହସି) ଆଗୋ ତୁମର ଏତେ ବୁଦ୍ଧିନା ?

ସନ୍ତୋଷ : ମୋ ବୁଦ୍ଧି ତୁମର ପସନ୍ଦ ହେଲାଟି ? (ହସିଲେ)

(ଆଲୋକ ଓ ଯନ୍ତ୍ର ସଙ୍ଗୀତରେ ସମୟ ପରିବର୍ତ୍ତନର ସୂଚନା)

ପବନ : (ବାହାରୁ) ସନ୍ତୋଷ ବାବୁ ! ସନ୍ତୋଷ ବାବୁ ଘରେ ଅଛନ୍ତି ?

ସନ୍ତୋଷ : ଆସନ୍ତୁ ।

ପବନ : ଏବାଟେ ଏମିତିଟିକେ ଚାଲିଯାଉଥିଲି..... ।

ସନ୍ତୋଷ : ଆପଣଙ୍କ ସାଙ୍ଗେ କେତେ ଦିନରୁ ଦେଖାହେଇ ନଥିଲାତ......

ପବନ : ସେଇଥିପାଇଁ ଟିକେ ଦେଖାକରି ଯିବାକୁ ଚାଲିଆସିଲି ।

ସନ୍ତୋଷ : ହଉ, ଭଲ କଲେ ।

ପବନ : ଆଉ ସବୁ ଭଲ ତ ?

ସନ୍ତୋଷ : ଭଲ ? ହଁ ଭଲ.....ମାନେ.....

ପବନ : କଣ ଏମିତି ଭଲ ଭଲ ହେଉଛନ୍ତି ?

ସନ୍ତୋଷ : ଆପଣ ପଚାରିଲେ ଯେ..... ?

ପବନ : କଣ ପଚାରିଲି ?

ସନ୍ତୋଷ : ଏଇ ଭଲ କଥା ?

ପବନ : କୋଉ ଭଲକଥା ?

ସନ୍ତୋଷ : ମାନେ ଏଇ ଭଲକଥା ମ ?

ପବନ : ସନ୍ତୋଷବାବୁ !

ସନ୍ତୋଷ : ଏଁ !

ପବନ : ଆପଣ କ'ଣ ଟିକେ ନର୍ଭସ ହେଉଛନ୍ତି କି ?

ସନ୍ତୋଷ : କାହିଁ ନାହିଁ ତ ?

ପବନ : ଏମିତି କଥାବାର୍ତ୍ତା କରୁଛନ୍ତି କାହିଁକି ?

ସନ୍ତୋଷ : ନା, ମାନେ.....ମୁଁ କାହିଁକି ନର୍ଭସ ହେବି ?

ପବନ : ଆପଣ କଥା ଲୁଚାଉଛନ୍ତି ।

ସନ୍ତୋଷ : ଆପଣ ତେବେ କ'ଣ କଥା ଜାଣିଗଲେଣି ?

ପବନ : ମାନେ ?
ସନ୍ତୋଷ : ମାନେ ଆଉ କ'ଣ ?
ପବନ : କଥାଟା ପରିଷ୍କାର କରି କହୁନାହାନ୍ତି କାହିଁକି ?
ସନ୍ତୋଷ : କ'ଣ ଆଉ କହିବି ?
ପବନ : କ'ଣ ପୁଅ, ବୋହୂ..... ?
ସନ୍ତୋଷ : (ଏଣେତେଣେ ଚାହିଁବାର ଅଭିନୟ କରି) ହଁ ।
ପବନ : ମାନେ ଅପଢ଼ ?
ସନ୍ତୋଷ : (ଭିତର ଆଡୁ କେହି ଆସୁଛ କି ନାହିଁ ଲକ୍ଷ କରି ଚାପା କଣ୍ଠରେ) ହଁ, ଅପଢ଼ ।
ପବନ : କ'ଣ ପୁରା ଅପଢ଼ ?
ସନ୍ତୋଷ : ଆପଣ ତ ନିଜ ଲୋକ । ତେଣୁ ଆପଣଙ୍କୁ କଥା ଲୁଚେଇ ଲାଭ ନାହିଁ ।
ପବନ : କଥାଟା କ'ଣ କୁହନ୍ତୁ ନା ?
ସନ୍ତୋଷ : (ଅତି ବିଶ୍ୱାସରେ କହିବାର ଅଭିନୟ କରି) ପୁଅ କାଲି କନିଆଁ ଦେଖି ଘରଛାଡ଼ି ଯାଇ କଲେଜରେ ରହିବ ବୋଲି ବାହାରିଲାଣି ।
ପବନ : ଆପଣ କ'ଣ ଚିନ୍ତା କରୁଛନ୍ତି ?
ସନ୍ତୋଷ : କ'ଣ ଆଉ କରିବି ?
ପବନ : ଏଇ ମଉକାରେ ସମୁଦିଙ୍କ ଠାରୁ ନୂଆ କାର୍‌ଟିଏ ଆଉ ଗୋଟିଏ ଘର ଶୀଘ୍ର କରିବାପାଇଁ କିଛି ପ୍ରତିଶ୍ରୁତି ?
ସନ୍ତୋଷ : ଆପଣ ଯେ କ'ଣ କୁହନ୍ତି ?
ପବନ : ଖବର ଦାର ସନ୍ତୋଷବାବୁ । ପୁଅକୁ କେବେହେଲେ ଘରୁ ଛାଡ଼ିବେନି । ନହେଲେ ସବୁଦିନପାଇଁ ପସ୍ତେଇବେ । ମୁଁ ଆସୁଛି । ନମସ୍କାର । (ପ୍ରସ୍ଥାନ)
(ବାଦ୍ୟ ଯନ୍ତ୍ର ଓ ଆଲୋକ ଦ୍ୱାରା ସମୟ ପରିବର୍ତ୍ତନ ସୂଚନା - ସମୟ ଅପରାହ୍ନ । ସନ୍ତୋଷବାବୁ ଘରେ ନାହାନ୍ତି । ଅତନୁର ପ୍ରବେଶ । ହାତରେ ନୂଆ ଭି.ଆଇ.ପି. ବାକ୍ସ । ଆଉ ଗୋଟେ ବ୍ୟାଗ୍ ମଧ । ବାହାରକୁ ଯିବାକୁ ପ୍ରସ୍ତୁତ ହୋଇଆସିଛି । ଜିନିଷପତ୍ରକୁ ଦେଖିଲେ ମନେହେବ ଯେମିତି ଅତନୁ ବାହାରେ ବେଶ୍ କିଛିଦିନ ରହିବାପାଇଁ ଜିନିଷ ନେଇ ଘରୁ ଯାଉଛି । ମୁହଁରେ ଉତ୍କଣ୍ଠା ସୁସ୍ପଷ୍ଟ । ପଛେ ପଛେ ଅନୁରାଧା ।)

ଅତନୁ : (ପ୍ରବେଶ କରିବା ସମୟରେ କହିକହି) ମୁଁ ନିଷ୍ପତ୍ତି ନେଇସାରିଛି ।
ଅନୁରାଧା : ଆଉ ଥରେ ଚିନ୍ତାକରି ଦେଖ ।
ଅତନୁ : (ବିରକ୍ତ ପ୍ରକାଶ କରି) କ'ଣ ଆଉ ଚିନ୍ତା କରିବି ?
ଅନୁରାଧା : ଏମିତି ଭାବରେ ଘଡୁଯାଇ.......
ଅତନୁ : (ଦୃଢ ଭାବରେ) ମୋର କିଛି ଉପାୟ ନାହିଁ ।
ଅନୁରାଧା : ସେମିତି କୁହନା ।
ଅତନୁ : ମୁଁ ଅନେକ ଭାବିଚିନ୍ତି ଠିକ୍ କରିଛି ।
ଅନୁରାଧା : ହଁ, ଅନେକ ଭାବିଛ । କିନ୍ତୁ ଠିକ୍ କରିନା ।
ଅତନୁ : ତୁମେ କ'ଣ ତା'ହେଲେ ମତେ ଚ୍ୟାଲେଞ୍ଜ କରୁଛ ?
ଅନୁରାଧା : ନା, ଏଇଟା ଚ୍ୟାଲେଞ୍ଜ ନୁହେଁ ।
ଅତନୁ : ଆଉ ତେବେ.... ?
ଅନୁରାଧା : ଅନୁରୋଧ ।
ଅତନୁ : ତୁମର ଏ ଅନୁରୋଧ ମୋ ଗତିପଥକୁ ରୁଦ୍ଧ କରିପାରିବନି ।
ଅନୁରାଧା : ତୁମର ପଥରୋଧ କରିବାକୁ ମୁଁ ଆସିନି ।
ଅତନୁ : ଆଉ..... ?
ଅନୁରାଧା : ନିଷ୍ପତ୍ତିର ପୁନର୍ବିଚାର କରିବାପାଇଁ ଅନୁରୋଧ କରିବାକୁ ଆସିଛି ।
ଅତନୁ : ମୁଁ ଯଦି ତୁମକଥା ନରଖେ ?
ଅନୁରାଧା : ତୁମେ ମୋ ପ୍ରତି ଯେମିତି ଇଛା ସେମିତି ବ୍ୟବହାର କରିପାର । ତାକୁ ମୁଁ ହସି ହସି ସହିନେବି । କିନ୍ତୁ ମୋ ବାପା, ମାଙ୍କ ପ୍ରତି ନିଷ୍ଠୁର ବ୍ୟବହାର କରନି ।
ଅତନୁ : ମୁଁ ତ ସେମାନଙ୍କୁ କେବେ ଖରାପ ବ୍ୟବହାର କରିନି ?
ଅନୁରାଧା : ତୁମେ ଘରଛାଡ଼ିଲେ, ସେମାନେ ଦୁଃଖ ପାଇବେ ।
ଅତନୁ : କାହିଁକି ?
ଅନୁରାଧା : ସେମାନେ ଭାବିବେ ମତେ ଘୃଣାକରି ତୁମେ ବାହାରେ ରହୁଛ ।
ଅତନୁ : ମୁଁ ତ ତୁମକୁ ଘୃଣା କରିନି ?
ଅନୁରାଧା : ତେବେ ତ୍ୟାଗ କରିଛ ?
ଅତନୁ : ହଁ । ତା ହୋଇପାରେ ।
ଅନୁରାଧା : କେଉଁ ବାପା, ମା, ଏକଥା ଶୁଣି ଖୁସି ହେବେ ?

ଅତନୁ : ସେମାନେ ଶୁଣିବେ କେମିତି ?
ଅନୁରାଧା : ପରିସ୍ଥିତି କହିବ ।
ଅତନୁ : ମୁଁ ସେଥିପାଇଁ କିଛି କରିପାରିବି ନାହିଁ ।
ଅନୁରାଧା : ତୁମେ ଏକା କିଛିକରବୋଲି ମୁଁ କହୁନାହିଁ ।
ଅତନୁ : ଆଉ କିଏ କରିବ ।
ଅନୁରାଧା : ମୁଁ କରିବି ।
ଅତନୁ : ତୁମେ କ'ଣ କରିବ ?
ଅନୁରାଧା : ତୁମେ ଘରେ ରହିବ । ସମସ୍ତେ ଜାଣିବେ ଆମେ ଖୁସିରେ ଅଛେ । କିନ୍ତୁ ଆମ ଭିତରେ....
ଅତନୁ : ଓ, ନାଟକ..... ?
ଅନୁରାଧା : ତେବେ ତୁମେ ନାଟକ କରୁଛ କାହିଁକି ?
ଅତନୁ : କ'ଣ କହିଲ ? ମୁଁ ନାଟକ କରୁଛି ? ଆଚ୍ଛା, ଆଚ୍ଛା । ଭଲ ହେଲା । ତୁମର ଧାରଣା ମୁଁ ନାଟକ କରୁଛି । ତେବେ ଏଇଧାରଣା ଯେତେବେଳେ ସତରେ ପରିଣତ ହେବ । ସେତେବେଳେ ଯାଇ ବୁଝିପାରିବ । ଚାଲିଲି.... । (ଦ୍ରୁତପଦରେ ପ୍ରସ୍ଥାନ । ସେଇ ସ୍ଥାନରେ ଅନୁରାଧା ପଥର ପ୍ରତିମା ପରି ଠିଆ ହୋଇଥିଲା । ବାଦ୍ୟଯନ୍ତ୍ର ଆଉ ଆଲୋକରେ ସମୟ ପରିବର୍ତ୍ତନ ସୂଚନା । ପରଦିନ ଅପରାହ୍ନ । ଝିଅକୁ ଡାକି ଡାକି ପ୍ରବେଶ କଲେ ସାବିତ୍ରୀ)
ସାବିତ୍ରୀ : ନୀରୁ ! ନୀରୁ ।
ନିରୁପମା : (ପ୍ରବେଶ କରି) ମତେ ଡ଼ାକୁଛ ?
ସାବିତ୍ରୀ : ତୋ ଭାଉଜ କ'ଣ କରୁଛନ୍ତି ?
ନିରୁପମା : ଶୋଇଛି ।
ସାବିତ୍ରୀ : ଶୋଇଛି କାହିଁକି ?
ନିରୁପମା : ତୁ ଯାଇ ପଚାରୁନୁ ?
ସାବିତ୍ରୀ : ତାକୁ ଡ଼ାକିଦେ ।
ନିରୁପମା : ବୂଆବୋଉ ! ବୂଆବୋଉ !!
ଅନୁରାଧା : ମତେ ଡ଼ାକୁଥିଲେ, ବୋଉ ?
ସାବିତ୍ରୀ : ହଁ । ମୁଁ ଟିକେ ସାଇଆଡୁ ଆସୁଛି । ତୁ ବାସନକୁସନ ଧୁଆଧୁଇ କରି ଘର

ଓଳେଇ ଦେଇଥିବୁ ।

ନିରୁପମା : ତୋ ସାଙ୍ଗରେ ମୁଁ ଟିକେ ଯାଏଁ ବୋଉ ?

ସାବିତ୍ରୀ : ହଁ ଚାଲ । ଚଟେ ପରା ତୋ ଦାସଘର ଖୁଡ଼ୀ ଡ଼ାକିଛନ୍ତି ।

ନିରୁପମା : ଆରେ ହଁତ । ଚାଲ୍ ଚାଲ୍ ଯିବା ।

ସାବିତ୍ରୀ : ତୋ ହାରଟାତ ଏଯାଏ ଝଲାହୋଇ ଆସିଲାନି । ଏମିତି ଫୁଙ୍ଗୁଳା ବେକ କରି କ'ଣ ଗାଁରେ.... ।

ଅନୁରାଧା : (ନିଜ ବେକରୁ ହାର ଖୋଲି) ଏଇ ହାରଟା ପିନ୍ଧିକରି ଯାଇଥା, ନିରୁ ।

ନିରୁପମା : ନାଇଁମ ଭାଉଜ, ଥାଉ ।

ସାବିତ୍ରୀ : ଭାଉଜ ଯଦି ଖୁସିରେ ଦଉଚି, ପିନ୍ଧୁନୁ ? ନାହିଁ କରୁଛୁ କାହିଁକି ? ତା'ବାପା ତ 'ଦୁଆର-ମଡ଼ା' ବାବଦକୁ ଇଆଡୁସିଆଡୁ ଶାଢୀଖଣ୍ଡେ ପକେଇ ଦେଲା । ହାର ଖଣ୍ଡେ ବି ଦେଲାନି ।

ନିରୁପମା : ସେଥିରେ ଦୂଆବୋଉଙ୍କର ଦୋଷ କ'ଣ ?

ସାବିତ୍ରୀ : ଦୋଷ ଆଉ କ'ଣ ? ଯେମିତି ବାପାକୁ ସେମିତି ଝିଅ । ଚାଲ୍, ଚାଲ୍ । ତେଣେ ସେମାନେ ଅପେକ୍ଷା କରିଥିବେ । (ସାବିତ୍ରୀ ଓ ନିରୁପମା ବାହାରକୁ ଚାଲିଗଲେ । ଅନୁରାଧା ସେମାନଙ୍କ ଯିବା ବାଟକୁ ଚାହିଁ ରହିଲା । କିଛିକ୍ଷଣ ପରେ ଦୁଃଖରେ ମୁହଁଫେରାଇ ଭିତରକୁ ଗଲା । ବାଦ୍ୟଯନ୍ତ୍ର ଆଉ ଆଲୋକରେ ସମୟ ପରିବର୍ତ୍ତନ ସୂଚନା, ସନ୍ତୋଷବାବୁ ଘରେ ବସି କାଗଜପତ୍ର ଦେଖୁଥିଲେ । ବାହାରୁ ଡ଼ାକିଲେ ପବନବାବୁ)

ପବନ : (ବାହାରୁ) ସନ୍ତୋଷବାବୁ ଘରେ ଅଛନ୍ତି ?

ସନ୍ତୋଷ : ଆସନ୍ତୁ ପବନବାବୁ । ଭିତରକୁ ଆସନ୍ତୁ । (ପବନଙ୍କ ପ୍ରବେଶ) ବସନ୍ତୁ । ଅନେକ ଦିନପରେ ଆମ ଆଡ଼େ ପାଦପଡ଼ିଲା ।

ପବନ : ଅନେକ ଦିନ ଆଉ କ'ଣ ? ଏଇ ତ ସେଦିନ ଆସିଥିଲି । ଆଉ ସବୁ ଖବର କ'ଣ ?

ସନ୍ତୋଷ : କେଉଁ ଖବର କଥା ପଚାରୁଛନ୍ତି ?

ପବନ : ମୁଁ ଯାହା ପଚାରୁଛି, ଆପଣ କ'ଣ ଜାଣିପାରୁ ନାହାନ୍ତି ? ଶୁଣନ୍ତୁ ସନ୍ତୋଷବାବୁ ! ଆପଣଙ୍କ ସମ୍ବନ୍ଧୀ ମତେ ଖବର ପଠେଇ ଡ଼କେଇ ନେଇଥିଲେ ।

ସନ୍ତୋଷ : ଆଚ୍ଛା, ଆଚ୍ଛା । ଆପଣ ତାହେଲେ ଏବେ ଅକ୍ରୁର, ନା ଉଦ୍ଧବ ନା ଶ୍ରୀକୃଷ୍ଣ ?

ପବନ : ମାନେ ?

ସନ୍ତୋଷ : ମାନେ ଆତି ସହଜ । ଅକ୍ରୁର ଅସୁରରାଜ କଂସାସୁରଙ୍କର ଦୂତ ହୋଇ ମଥୁରାରୁ ଗୋପକୁ ଆସି ରାମକୃଷ୍ଣଙ୍କୁ ଧରି ନେଇଥିଲେ । ଉଦ୍ଧବ ଶ୍ରୀକୃଷ୍ଣଙ୍କର ଦୂତ ହୋଇ ମଥରାରୁ ଗୋପକୁ ଆସି ଗୋପାଙ୍ଗନା ମାନଙ୍କର ଭଲମନ୍ଦ ପଚାରି ବୁଝିଥିଲେ । ଆଉ ଶ୍ରୀକୃଷ୍ଣ ପାଣ୍ଡମାନଙ୍କର ଦୂତ ହୋଇ କୌରବ ରାଜ ସଭାକୁଯାଇ ଶାନ୍ତିଦୂତରୂପେ ପାଞ୍ଚଖଣ୍ଡ ପଡ଼ା ମାଗିଥିଲେ ।

ପବନ : ଥାଉ, ଥାଉ ସନ୍ତୋଷବାବୁ । ମହାଭାରତ ଚର୍ଚ୍ଚାକରିବାକୁ ମୋ ହାତରେ ବେଳନାହିଁ ।

ସନ୍ତୋଷ : ତେବେ ଆପଣଙ୍କର ବକ୍ତବ୍ୟ, ସଂକ୍ଷେପରେ ଉପସ୍ଥାପନା କରନ୍ତୁ ।

ପବନ : ପୁଅକୁ ଘରୁ ନଛାଡ଼ିବାକୁ ମୁଁ ସେଦିନ ଆପଣଙ୍କୁ ପରାମର୍ଶ ଦେଇଥିଲି ।

ସନ୍ତୋଷ : ହଁ ।

ପବନ : ପୁଅ ଘରୁ ଗୋଡ଼କାଢ଼ି ବାହାରିଗଲା ।

ସନ୍ତୋଷ : ମୁଁ ଆଉ କ'ଣ କରିବି ?

ପବନ : ବୋହୂ ଆଖିର ଲୁହ ଦେଖି ପାରୁଛନ୍ତି ତ ?

ସନ୍ତୋଷ : ସିଏ କ'ଣ କାନ୍ଦୁଛି ?

ପବନ : ଆଉ କ'ଣ ସିଏ ଆନନ୍ଦରେ ହସି ହସି ଦୁଆରେ ଠିଆହୋଇ ହାତ ହଲେଇ ଟା, ଟା କହି ସ୍ୱାମୀକୁ ବିଦାୟଦେଇ ଖୁସିରେ ଘରେ ଶାଶୁ, ଶଶୁର ଆଉ ନଣନ୍ଦଙ୍କ ସେବାରେ ମନନିବେଶ କରିଛି ?

ସନ୍ତୋଷ : ଆପଣ ଏସବୁ ଜାଣିଲେ କେମିତି ?

ପବନ : ସେଇକଥା ପଚାରନ୍ତୁ ।

ସନ୍ତୋଷ : ପଚାରିଲିତ ।

ପବନ : ତେବେ ଶୁଣନ୍ତୁ । ଆପଣଙ୍କ ଘରର ସମସ୍ତ ହାଲ୍‌ଚାଲ୍ ଆପଣଙ୍କ ବୋହୂ ଆତି ବିସ୍ତୃତଭାବରେ ବର୍ଣ୍ଣନାକରି ଆପଣଙ୍କ ସମୁଧୀଙ୍କ ପାଖକୁ ଚିଠି ଲେଖିଥିଲେ । ସେ ଚିଠି ପାଇବାପରେ ସମୁଧୀ ଆପଣଙ୍କର ଶଯ୍ୟାଶାୟୀ ହେବାକୁ ଯାଉଛନ୍ତି । ତାଙ୍କର ହାଏବ୍ଲଡ୍ ପ୍ରେସର୍ ରୋଗ ବାହାରି ପଡ଼ିଛି । ତାଙ୍କ ସ୍ତ୍ରୀଙ୍କୁ ଏ ବିଷୟରେ ସେ କିଛି ଜଣାଇ ନାହାନ୍ତି । ମତେ ଡ଼ାକି ସବୁକଥା କହିଲେ । ଅନେକ ଅନୁନୟ ବିନୟ ହୋଇ ମୋହାତରେ ଆପଣଙ୍କ ପାଖକୁ ଖବର ପଠେଇଛନ୍ତି । ଆପଣ ଟିକେ ମୋ ସାଙ୍ଗରେ

ଆସନ୍ତୁ ।

ସନ୍ତୋଷ : ଆପଣ ବର୍ତ୍ତମାନ ତାହେଲେ ଅକ୍ରୁର ଭୂମିକାରେ.... ?

ପବନ : ସନ୍ତୋଷବାବୁ !

ସନ୍ତୋଷ : ମୁଁ ଯାଇ କ'ଣ କରିବି ?

ପବନ : ସେକଥା । ସେଇଠି କଥାବାର୍ତ୍ତା ହେବା ।

ସନ୍ତୋଷ : ମୁଁ ଯିବା କ'ଣ ଠିକ୍ ହେବ ?

ପବନ : ସନ୍ତୋଷବାବୁ ! ଦୁଇପରିବାର ମଧ୍ୟରେ ଗୋଟେ ସମସ୍ୟା ସୃଷ୍ଟି ହୋଇଛି । ସେ ପରିବାରର ମୁଖ୍ୟ ସିଏ । ଆପଣ ପରିବାରର ମୁଖ୍ୟ ଆପଣ । ଦୁହେଁ ସମନାସାମନି ବସି କଥାଟାକୁ ଆଲୋଚନାକରି ସମାଧାନ କରିବାର ବାଟ ଖୋଜିବାରେ ଭୁଲ୍ କେଉଁଠି ?

ସନ୍ତୋଷ : ଯେତେହେଲେ ମୁଁ ପୁଅ ବାପା ?

ପବନ : ସେକଥା ସିଏ ଜାଣନ୍ତି ।

ସନ୍ତୋଷ : ସିଏ ଝିଅ ବାପ ।

ପବନ : ହଁ । ସିଏ ଝିଅ ବାପା ବୋଲିତ ଆସିଲେ ନି । କାରଣ ଆପଣ ଜାଣନ୍ତି, ତାଙ୍କ ସ୍ତ୍ରୀ ଜଣେ ଅତ୍ୟନ୍ତ ରକ୍ଷଣଶୀଳା ମହିଳା । ଝିଅ ବାହାଘର ମାସେ ନପୂରୁଣୁ ଝିଅ ବାପା ଯଦି ଝିଅ ଘରକୁ ଆସେ, ତେବେ ବାହାଘର ପରେ ଝିଅ ନିଶ୍ଚୟ ଅସୁବିଧାରେ ଅଛିବୋଲି ସେ ସନ୍ଦେହ କରିବେ ।

ସନ୍ତୋଷ : ସେଥିରୁ ମତେ କ'ଣ ମିଳିବ ?

ପବନ : ଆପଣ ବୋଧହୁଏ ଜାଣନ୍ତିନାହିଁ, ସେ ଜଣେ ହାର୍ଟ ପ୍ୟାସେଣ୍ଟ ?

ସନ୍ତୋଷ : ମତେ କେହି ଏକଥା କହିନାହାନ୍ତି ।

ପବନ : ତାଙ୍କ ଝିଅ ସୁଖରେ ରହିବ ବୋଲି ସେ ଦୁଇହାତ ଖୋଲି ବାହାଘରରେ ଖର୍ଚ୍ଚ କରିଥିଲେ ।

ସନ୍ତୋଷ : ସେକଥା ତ ଆପଣମାନେ ଜାଣନ୍ତି ।

ପବନ : ଝିଅର ସୁଖର ସଂସାର ବିଷୟରେ ସନ୍ଦେହ ଆସିଲେ, ତାଙ୍କ ସ୍ତ୍ରୀଙ୍କ ଜୀବନ ପ୍ରତି ବିପଦ ଆସିପାରେ ।

ସନ୍ତୋଷ : ନା, ନା । ସେପରି ହେବା ଉଚିତ ନୁହେଁ ।

ପବନ : ସେମିତି ଯଦି କିଛି ହୋଇଯାଏ, ତେବେ.... ?

ସନ୍ତୋଷ : ତେବେ ଆଉ କ'ଣ ପବନ ବାବୁ ?

ପବନ : ତେବେ ଲୋକେ ଆପଣଙ୍କୁ ଛିଛି କହିବେ ।
ସନ୍ତୋଷ : ଲୋକଙ୍କ କଥା ଅଢେଇ ଦିନିଆ ।
ପବନ : ଆପଣଙ୍କ ବୋହୂ ଆପଣଙ୍କୁ କ୍ଷମା କରିବ ତ ?
ସନ୍ତୋଷ : ତା କଥା ପଛରେ ବୁଝିବା ।
ପବନ : ଯଉତୁକ ବିରୋଧ ଆଇନ୍ ବଳରେ ଆପଣ, ଆପଣଙ୍କର ପୁଅ, ଆପଣଙ୍କର ସ୍ତ୍ରୀ ଆଉ ଝିଅ ସମସ୍ତେ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଜନ୍ମସ୍ଥାନ ଦର୍ଶନ କରିବେ ।
ସନ୍ତୋଷ : ସମ୍ବନ୍ଧୀ କ'ଣ ମଥୁରାଯିବାକୁ ଗାଡ଼ି ପଠେଇଛନ୍ତି କି ?
ପବନ : ମଥୁରା ? ମଥୁରା କାହିଁକି ଯିବେ ?
ସନ୍ତୋଷ : ଏଇଯେ କହିଲେ, ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଜନ୍ମସ୍ଥାନ ଦର୍ଶନ ?
ପବନ : (ହସିହସି) ଆହେ ମଥୁରା ନୁହେଁ ହୋ । ଜେଲ୍‌ଖାନା ।
ସନ୍ତୋଷ : (ଚମକିପଡ଼ି) ଆରେ ବାବା ! ହଁ, ହଁ । ସେମିତି ଗୋଟେ ଆଇନ୍ ତ ଅଛି ।
ପବନ : ଆପଣ ଜାଣନ୍ତି ଟି ?
ସନ୍ତୋଷ : ହଁ, ଥରେ ଖବରକାଗଜରେ ବାହାରିଥିଲା, ଜଣେ ଅବଶରପ୍ରାପ୍ତ ଅଫସିରଙ୍କ ବୋହୂ ମରିଯିବାରୁ, ପୋଲିସ ଶାଶୁ ହାତରେ ହାତକଡ଼ି ଆଉ ନଣନ୍ଦ ଗୋଡ଼ରେ ବେଡ଼ି ପକେଇ ରାସ୍ତାରେ ଚଲେଇ ଚଲେଇ ଜେଲ୍‌କୁ ନେଇଗଲେ ।
ପବନ : ଆଉ ଶ୍ୱଶୁର ?
ସନ୍ତୋଷ : ମାନେ ମୋକଥା ପଚାରୁଛନ୍ତି ?
ପବନ : ନା, ନା । ସେ ଅବସର ପ୍ରାପ୍ତ ଅଫିସରଙ୍କ କଥା ।
ସନ୍ତୋଷ : ସିଏ କୁଆଡ଼େ ଖଣ୍ଡେ ଲୁଙ୍ଗିପିନ୍ଧି ଖାଲିଦେହରେ, ଖାଲିପାଦରେ ସ୍ତ୍ରୀଙ୍କ ପଛେପଛେ ମୁଣ୍ଡ ତଳକୁ କରି ଚାଲିଥିଲେ ।
ପବନ : ଏଥିରେ ଆପଣଙ୍କ ମୁଣ୍ଡ ତଳକୁ ହେବ ନା ଉପରକୁ ?
ସନ୍ତୋଷ : କଥା କ'ଣ ଏତେ ବାଟ ଗଲାଣି ?
ପବନ : ଯାଇନାହିଁ । କିନ୍ତୁ ଯାଇପାରେ..... ।
ସନ୍ତୋଷ : ତାହେଲେ ଚଅଳ ଚାଲନ୍ତୁ ।
ପବନ : କୁଆଡ଼େ ।

ସନ୍ତୋଷ : ସମୁଧୀଙ୍କ ଘରକୁ (ଉଠି ଠିଆହେଲେ ।)
ପବନ : କ'ଣ ଖାଲି ହାତରେ ?
ସନ୍ତୋଷ : ଝିଅଘର ଜିନିଷ ପରାଖାଆନ୍ତି ନାହିଁ । ମୁଁ ଖାଲି ଏଣୁତେଣୁ ଗୁଡ଼େ ନେଇ, ସମୁଧୀଙ୍କୁ ଭାରାକ୍ରାନ୍ତ କରିବି କାହିଁକି କହିଲେ ?
ପବନ : ତା'ହେଲେ ଉଠନ୍ତୁ ।
ସନ୍ତୋଷ : ହେଲେ, ଆମ ଘର କଥା ଟିକେ ତାଙ୍କୁ ବୁଝେଇ ଦେବେ ।
ପବନ : ମାନେ ଏଇ ଆପଣଙ୍କ ସ୍ତ୍ରୀଆଉ ପୁଅଙ୍କ କଥା ତ ?
ସନ୍ତୋଷ : ନାଇ ମ । ଏଇ ଛୋଟ ପୁରୁଣା ମାଟିଘରଟାକୁ..... ?
ପବନ : ଭାଙ୍ଗି ପକାକରିବା ବିଷୟ ?
ସନ୍ତୋଷ : ହିଁ ।
ପବନ : ହୋଇପାରିବ ନାହିଁ ।
ସନ୍ତୋଷ : କାହିଁକି ?
ପବନ : ଆପଣଙ୍କ ପୁଅ, ଆପଣଙ୍କ ହାତରେ ନାହିଁ ।
ସନ୍ତୋଷ : ଆପଣ କେମିତି ଜାଣିଲେ ।
ପବନ : ସେ ଘରଛାଡ଼ିଯାଇ ବାହାରେ ରହିବାରୁ ।
ସନ୍ତୋଷ : ମୁଁ ଡ଼ାକିଲେ ସେ ଫେରିଆସିବ ।
ପବନ : ଜମା ଆସିବନି ।
ସନ୍ତୋଷ : (ଉତ୍ତେଜିତ ହୋଇ) ତା, ବାପା ଆସିବ ।
ପବନ : ତା' ବାପା ଆସିବା ନ ଆସିବାର କିଛି ଯାଏ ଆସେ ନାହିଁ ।
ସନ୍ତୋଷ : ତେବେ କ'ଣ ବର୍ତ୍ତମାନ ମୁଁ ନଗଲେ ଚଳିବ ?
ପବନ : ସବୁକଥା ଶୁଣିସାରିଲାପରେ ଆପଣ ପୁଣି ଏକଥା ପଚାରିଲେ ?
ସନ୍ତୋଷ : ତା'ହେଲେ ବର୍ତ୍ତମାନ କ'ଣ କରିବା ?
ପବନ : ଆପଣଙ୍କ ସମୁଧୀଙ୍କ ଘରକୁ ଯିବା ।
ସନ୍ତୋଷ : ହଉ ଚାଲନ୍ତୁ । (ଉଭୟ ବାହାରକୁ ଗଲେ । ଯନ୍ତ୍ର ସଙ୍ଗୀତ ଓ ଆଲୋକ ସାହାଯ୍ୟରେ ସମୟ ପରିବର୍ତ୍ତନ ସୂଚନା । ନିରୁପମା କୌଣସି କାର୍ଯ୍ୟରେ ବ୍ୟସ୍ତ । ଅତ୍ୟନ୍ତ ବିବ୍ରତ ଭାବରେ ପ୍ରବେଶ କଲା ଅନୁରାଧା ।)
ଅନୁରାଧା : ନିରୁ
ନିରୁପମା : କ'ଣ ? (ରକ୍ଷଭାବରେ)

ଅନୁରାଧା : ଗୋଟେ କଥା ପଚାରିବି ନିରୁ ?
ନିରୁପମା : (ସମାନ ଭାବରେ) କି କଥା ?
ଅନୁରାଧା : ତୁମକୁ ମୋରାଣ । ତୁମେ କିଛି ଭାବିବନି ।
ନିରୁପମା : କଥାଟା କ'ଣ ଆଗେ କୁହ ।
ଅନୁରାଧା : ମୋ ଗହଣାବାକ୍ସଟା ମିଳୁନି ।
ନିରୁପମା : (ରାଗରେ) କ'ଣ କହିଲ ?
ଅନୁରାଧା : (ଅତ୍ୟନ୍ତ ନମ୍ର ଅଥଚ ଉଜ୍ଜ୍ୱଳିତ ଭାବରେ) ହଁ, ନିରୁ ।
ନିରୁପମା : ତୁମେ ମତେ ଚୋର ବୋଲି କହୁଛ ?
ଅନୁରାଧା : (ବ୍ୟସ୍ତ, ବିବ୍ରତ ଏବଂ ନମ୍ର ଭାବରେ) ମୋକଥା ଟିକେ ଶୁଣ ନିରୁ..... ।
ନିରୁପମା : (ରାଗରେ ଚିତ୍କାର କଲାପରି) ବୋଉ.... ବୋଉ....... !
ସାବିତ୍ରୀ : (ଦ୍ରୁତଗତିରେ ପ୍ରବେଶ) କ'ଣ କିଲୋ ?
ନିରୁପମା : (ରାଗରେ କାନ୍ଦ କାନ୍ଦ ହୋଇ) ତୋ ବୋହୂମତେ ଚୋର ଧରୁଛି ।
ସାବିତ୍ରୀ : (ରାଗରେ) ମାନେ.... ?
ନିରୁପମା : ତା'ଗହଣ ବାକ୍ସ କାଲେ ମୁଁ ନେଇଛି ?
ଅନୁରାଧା : ତୁମେ ମତେ ଭୁଲ ବୁଝନା.....
ସାବିତ୍ରୀ : (ରାଗରେ ଅନୁରାଧାକୁ ମାରି) ଚୋପ୍ । କ'ଣ କହିଲୁ ? ମୋ ଝିଅ ଚୋରଣୀ ? ମୋ ଝିଅ ତତେ ଭୁଲ ବୁଝୁଛି ? ସିଏ ତୋ ଗହଣାବାକ୍ସ ନେଇଛି ? ଆଲୋ ଛୋଟଘର ଝିଅ । ଆଲୋ ଛୋଟ ଲୋକ । ତୋର ଏତେ ସାହାସ ? ତୁ ମୋ ଝିଅକୁ ଚୋରଣୀ କହିଲୁ ?
ଅନୁରାଧା : (ଅନୁନୟ କରି କାନ୍ଦି) ମୋ କଥା ଟିକେ ଶୁଣ ବୋଉ..... ।
ସାବିତ୍ରୀ : କ'ଣ ଆଉ ଶୁଣିବିଲୋ । ତୁ ମୋ ଝିଅକୁ ଚୋରଣୀ କହିଲୁଣି । ଆସୁଆଜି ତା' ବାପା । ଆଜି ତୋର ଦିନକୁ ମୋର ଦିନେ । ଏ ଘରେ ତୁ ରହିବୁ ନ ହେଲେ ମୁଁ ରହିବି ।
ଅନୁରାଧା : ମୁଁ ଏଘରୁ କୁଆଡ଼େ ଯିବି ବୋଉ ?
ସାବିତ୍ରୀ : (ବ୍ୟଙ୍ଗ କରି) କୁଆଡ଼େ ଯିବି ବୋଉ ! (ରାଗରେ) କିଲୋ ତୁ କ'ଣ ସବୁଦିନ ଏଠି ଥିଲୁ ? ଯେଉଁଠୁ ଆସିଥିଲୁ, ସେଇଠିକୁ ଚାଲିଯିବୁ । ତୋ ଛୋଟ୍‌ଲୋକ୍ ବାପା ପାଖକୁ ଚାଲିଯିବୁ ।
ଅନୁପମା : ତୁ ଟିକେ ରହତ ବୋଉ । ବାପା ଆସନ୍ତୁ ।

ସାବିତ୍ରୀ : ବାପା ? ଆଲୋ ତୋ ବାପା ଆସି କ'ଣ କରିବଲୋ ! ଏ ଛୋଟଲୋକ ଘର ଝିଅ ନିଜେ ଗହଣା ଲୁଚେଇ ତତେ ଚୋରୀ ଧରୁଚି । କାଳେ ତୋ ବାହାଘରରେ ତା' ଗହଣା ଦି'ଖଣ୍ଡ ଦେଇଦେବି । ସେଥିପାଇଁ ଆଗରୁ ପିଲାନ୍ କରୁଛି । ହଉ, ହଉଲୋ କାଳୀ, ରହ । ତୋ ମଜା ନିକାଳୁଛି ।

ଅନୁରାଧା : ତୁମେ ଏ କ'ଣ କୋହୁଛ ବୋହୂ ? ମୁଁ ପରା ମୋ ଗହଣା ବଳେବଳେ ନିରୁଙ୍କ ବେକରେ ପିନ୍ଧେଇ ଦିଏଁ..... ।

ସାବିତ୍ରୀ : (ଛିଗୁଲେଇ) ପିନ୍ଧେଇ ଦେଉ.... ? ବଳେବଳେ......? ଆଲୋ ଏ କାଳି ! ଏ ଛୋଟଲୋକ ଘର ଝିଅ ! ଆଲୋ କି ଗହଣା ଦେଖେଇ ହେଉଛୁଲୋ । ଆଲୋ ଗହଣା କ'ଣ ତୁ ବଳେ ବଳେ ମୋ ଘରକୁ ଆଣିଥିଲୁ ? ଆଲୋ ମୋ ପୁଅର ପାଠପଢାରେ କ'ଣ କିଛି ଖର୍ଚ୍ଚ ହୋଇନଥିଲା ?

ଅନୁରାଧା : (ଅନୁନୟ କରି) ମୋ କଥାକୁ ଏମିତି ଭୁଲ ଅର୍ଥ କରନି ବୋଉ । ମୁଁ ମୋ ବାପାଙ୍କ ରାଣ ପକେଇ କହୁଛି, ଭଗବାନଙ୍କ ରାଣ ପକେଇ କହୁଛି, ମୋ ଗହଣାବାକ୍ସ ନାହିଁ । ତେଣୁ ମୁଁ ନିରୁଙ୍କୁ ପଚାରିଲି.....।

ସାବିତ୍ରୀ : କାହିଁକି ପଚାରିଲୁ ? ସିଏ କ'ଣ ତୋ ଚାକରାଣୀ ? (ରାଗରେ ଗର୍ଜନକରି) ଆଲୋ ପୋଡା ମୁହିଁ । ଘରେ ପାଦ ଥୋଉ ଥୋଉ ମୋ ପୁଅ ଘରୁ ବାହାରିଗଲା, ହଇଲୋ ଅଲକ୍ଷଣୀ । ସେତକ ତୋ ଆଖିକି ଦେଖାଯାଉନି ? ତୁ ମୋ ପୁଅକୁ ଡ଼ାକି ଘରକୁ ଆଣିପାରୁନୁ ?

ଅନୁରାଧା : ଅନେକ ଚିଠି ଦେଲିଣି । ସିଏ ତ ଆସୁନାହାନ୍ତି ।

ନିରୁପମା : କେମିତି ଆସିବ ମ ?

ସାବିତ୍ରୀ : ଏଇ କାଳୀ ମୁହଁକୁ ଦେଖିବାକୁ ଆସିବ ?

ଅନୁରାଧା : ବାହାଘର ପୂର୍ବରୁ ବି ମୁଁ ତ କାଳୀଥିଲି ।

ନିରୁପମା : ଖାଲି କାଳୀ ନୁହେଁ, ଅସୁନ୍ଦରୀ ବି ।

ଅନୁରାଧା : ମୁଁ କାଳୀ, ମୁଁ ଅସୁନ୍ଦରୀ । ସେଥିପାଇଁ ମୁଁ କ'ଣ କରିବି ?

ସାବିତ୍ରୀ : ଆଲୋ ହେ ଅଣ୍ଡିରିଚଣ୍ଡୀ ! ତୁ କରିବୁନି ତ ଆଉ କିଏ କରିବ ଲୋ ।

ଅନୁରଧ : ତୁମେ ତ ବାହାଘର ଆଗରୁ ମତେ ଦେଖିବାକୁ ଯାଇଥିଲ ।

ସାବିତ୍ରୀ : ହଁ, ଯାଇଥିଲି । ଗଲିତ ଗଲି, କ'ଣ ହେଲା ?

ଅନୁରାଧା : ତୁମେ ବି ତ ଯାଇଥିଲ ନିରୁ ?

ନିରୁପମା : ହଁ ଯାଇଥିଲି ।
ଅନୁରାଧା : ତୁମ ଭାଇଙ୍କୁ ମନା କଲନି ?
ନିରୁପମା : ତୁମେ ତ କାଳୀ, ଅସୁନ୍ଦରୀ । ବାହାହେବାକୁ ହମ ହମ ହେଇ ରାଜି ହୋଇ ଯାଉଥିଲ କାହିଁକି ?
ଅନୁରାଧା : ସେ ଭୁଲଟା କ'ଣ ମୋର ? ଆଉ କାହାର ନୁହେଁ ?
ସାବିତ୍ରୀ : ଆଉ କାହାକଥା କହୁଛୁ ଲୋ ?
ଅନୁରାଧା : ସମସ୍ତଙ୍କ କଥା ।
ସାବିତ୍ରୀ : ତୋ ବାପ କଥାତ କହୁନୁ ?
ଅନୁରାଧା : କାହିଁକି ? ମୋ ବାପା କ'ଣ କରିଛନ୍ତି କି ?
ସାବିତ୍ରୀ : ନା, ନା । ତୋ ବାପ କାହିଁକି କ'ଣ କରିବ ? ସବୁ ଭୁଲ ତ କରିଛୁ ଆମେ । ତୋ ବାପର ଅସୁନ୍ଦରୀ କାଳୀ ଝିଅକୁ ବେକରେ ବାନ୍ଧିଛୁ ଆମେ ।
ନିରୁପମା : ମୋ ବାପା, ମୋ ଭାଇ ନ ଚାହିଁଥିଲେ, ଜୀବନ ସାରା ଅଭିଆଡ଼ି ହୋଇ ରହିଥାଆନ୍ତ । ଦେହରେ ବାଡ଼ୁଅ ପାଣି ଟୋପେ ପଡ଼ିନଥାନ୍ତା । କି ଫୁଟାଣି ମାରୁଛିଲୋ, ମା !
ଅନୁରାଧା : ନିରୁ ! ତୁମେ ଏକଥା କହୁଛ ?
ସାବିତ୍ରୀ : କ'ଣ ଟେ ସେ ଏମିତି ଭୁଲ କହିଲା କି ?
ନିରୁପମା : ଯୌତୁକ ପୁଣି ଯାହାତ ଦେଲେ ?
ଅନୁରାଧା : ଆଉ କ'ଣ ଦେଇଥିଲେ, ତୁମେ ଖୁସି ହୋଇଥାଆନ୍ତ ।
ସାବିତ୍ରୀ : ବାପ ଏତେ ବଡ଼ଲୋକ ବୋଲି ଫୁଟାଣି ମାରୁଛି, କାର ଖଣ୍ଡେ ବି ଦେଇପାରିଲାନାହିଁ ।
ଅନୁରାଧା : କାର୍ ଚଢ଼ିବାକୁ ଯୋଗ୍ୟତା ତୁମ ଭାଇଙ୍କର ଅଛି ?
ସାବିତ୍ରୀ : (ମାରିଲେ) ଆଲୋ କ'ଣ କହିଲୁ ? ମୋ ପୁଅର କାର ଚଢ଼ିବାର ଯୋଗ୍ୟତା ନାହିଁ ? ଆଲୋ ମୋ ପୁଅ ତୋପାଇଁ ଅଯୋଗ୍ୟ ? ନିକଲ୍ ମୋ ଘରୁ । (ମାରି, ଟାଣି ଟାଣି) ବାହାରି ଯା.....ଏବେ ବାହାରିଯା.... । ମୋ ଘରୁ ଯା କହୁଛି । ତୋପାଇଁ ଜିଏ ଯୋଗ୍ୟ ତା' ପାଖକୁ ଚାଲିଯା ।
ଅନୁରାଧା : ଇଏ ମୋ ଘର । ମୁଁ ଏଠୁ କୁଆଡ଼େ ଯିବି ?
ନିରୁପମା : ଓହୋ ଲୋ । ମୋ ବେହେଲ । ବାହାର ଏ ଘରୁ ।
ଅନୁରାଧା : ନା । ମୁଁ ଏ ଘରୁ ଆଦୌ ବାହାରକୁ ଯିବିନି ।

ନିରୁପମା : ଏତେ ସାହାସ ? ବୋଉ ମୁହଁରେ ପୁଣି ଜବାବ ? ଖାଲି ଟିକେ ବାପା ଆସନ୍ତୁ ।

ସାବିତ୍ରୀ : ବାପା ଆସି ଆଉ କ'ଣ କରିବେ ଲୋ । ଧର ତାକୁ । ଜବରଦସ୍ତ ଏ ଘରୁ ବର୍ତ୍ତମାନ ବାହାର କରିଦେବା । ଆଉ ଥରେ ସବୁ ଗହଣା ଆଉ ନୂଆ କାର କିଣିବାପାଇଁ ଟଙ୍କା ଆଣିଲେ, ସିଏ ଏ ଘରକୁ ଆସିବ ।

ନିରୁପମା : ହଁ । ସେଇୟା କରିବା । (ସାବିତ୍ରୀ ଓ ନିରୁପମା ଦୁହେଁ ଅନୁରାଧାକୁ ଧରି ମାରି ମାରି ଘରୁ ବାହାର କରିବାକୁ ଟଣାଓଟରା କଲେ । ମାଡ଼ଯନ୍ତ୍ରଣା ସହି ନପାରି ଅନୁରାଧା ବାପା ବୋଲି ଡ଼ାକ ଛାଡ଼ିଲା )

ଅନୁରାଧା : (ବିକଳରେ) ବାପା..... !

ସନ୍ତୋଷ : (ବାହାରୁ) ମୁଁ ଆସିଯାଇଛି ମା ! (ବାପାକୁ ଦେଖି ନିରୁପମା ଆନନ୍ଦରେ ଅନୁରାଧାଙ୍କ ବିଷୟରେ ଅଭିଯୋଗ ଆଣିବାଭଙ୍ଗୀ ଆରମ୍ଭ କଲା ଓ ସାବିତ୍ରୀ ମଧ ଖୁସି ହୋଇଗଲା ।)

ନିରୁପମା : (ଖୁସିରେ ଅପେକ୍ଷାକୃତ ବଡ଼ପାଟିରେ) ବାପା ! ଭାଉଜ ମତେ ଚୋରଣୀ ବୋଲି କହୁଛି ।

ସାବିତ୍ରୀ : ମୋ ପୁଅ ତାପାଇଁ ଅଯୋଗ୍ୟ ବୋଲି କହୁଛି ।

ନିରୁପମା : ବୋଉକୁ ଯାହାଇଚ୍ଛା ତାହା ବ୍ୟବହାର କରୁଛି ।

ସାବିତ୍ରୀ : ସିଏ ବର୍ତ୍ତମାନ ଏଘରୁ ଯିବ ।

ନିରୁପମା : ତା'ନହେଲେ, ଆମ ମାନ, ଇଜ୍ଜତ କିଛି ରହିବନି ।

ସାବିତ୍ରୀ : ତା'ପାଇଁ ମୋ ପୁଅ ଘରୁ ଗଲା ।

ନିରୁପମା : ତା'ପାଇଁ ଆମ ଘରେ ସବୁବେଳେ ଅଶାନ୍ତି ଲାଗିରହିଲା ।

ସାବିତ୍ରୀ : ତା'ପାଇଁ ଦାଣ୍ଡରେ ମୁଁ ଲୋକହସା ହେଲି ।

ନିରୁପମା : ସିଏ ମତେ ଗହଣା ଚୋରଣୀ ବୋଲି କହିଲା ।

ସାବିତ୍ରୀ : ସିଏ ଆଉଥରେ ସବୁ ଗହଣା ତା'ବାପାଘରୁ ଆଣିବ ।

ନିରୁପମା : ସିଏ ମୋ ଭାଇକି ଗାଡ଼ି ଚଢ଼ିବାକୁ ଅଯୋଗ୍ୟ ବୋଲି କହିଲା ।

ସାବିତ୍ରୀ : ତା' ବାପାଠୁଁ ଗୋଟେ ଗାଡ଼ି ଆଣିଲେ, ଏ ଘରକୁ ଆସିବ ।

ସନ୍ତୋଷ : ଏସବୁ କିଛି ନଆଣିଲେ..... ?

ସାବିତ୍ରୀ : (ଅନୁରାଧାକୁ ଧକ୍କାମାରି) ଏ ଘରୁ ଏବେ ଯିବ..... ।

ସନ୍ତୋଷ : (ରାଗରେ ଓ ବଡ଼ ପାଟିରେ) ଚୋପ୍.... (ସାବିତ୍ରୀ ଚୁଟିକୁ ଧରି

ଘୋଷାରିଆଣି) ବୋହୂ ଏଘରୁ ଆଦୌ ଯିବନାହିଁ । ସିଏ ଏଇଘରର ବୋହୂ । ଏ ଘର ତା'ର । ସିଏ ଯାର ମାଲିକ । ଏଇ ଘରେ ରହିବ । ନିରୁ ! ଗହଣାବାକ୍ସ ବାହାର କର ।

ନିରୁପମା : ମୁଁ ଗହଣାବାକ୍ସ କଥା କିଛି ଜାଣେନି ।

ସନ୍ତୋଷ : (ପାଖରେ ପଡ଼ିଥିବା ଖଣ୍ଡେ ଡ଼ାଙ୍ଗରେ ନିରୁକୁ ପିଟିଲେ) ଜାଣୁନା ? ବାହାରକର ବାକ୍ସ ।

ସାବିତ୍ରୀ : (ହସ୍ତକ୍ଷେପ କରି) ମୋ ଝିଆଟାକୁ ମାରିପକେଇବ ନା କ'ଣ ? ସିଏ କାହିଁକି ତା' ବାକ୍ସ ନେବ ?

ସନ୍ତୋଷ : (ସାବିତ୍ରୀ ଚୁଟିକୁ ଧରି) ତେବେ ତୁ ରଖିଚୁ । ବାହାର କ'ର ବାକ୍ସ ।

ସାବିତ୍ରୀ : ମୁଁ ସେ ଗହଣା ଫହଣା କଥା କିଛି ଜାଣେନା ।

ସନ୍ତୋଷ : ଜାଣନା ?ଅଲବଦ୍ ଜାଣ । ତୁମେ ସବୁ ଜାଣ । ତୁମେ ନଜାଣି ଆଉ କ'ଣ ପଞ୍ଚଗାଁରୁ ଚୋର ଆସି, ମୋ ବୋହୂର ଗଡ଼ରେଜ୍ ଆଲମିରା ଖୋଲି ଗହଣାବାକ୍ସ ନେଇଗଲା ?

ସାବିତ୍ରୀ : କହୁଛି ପରା ମୁଁ ସେ ସବୁ କଥା କିଛି ଜାଣେନି ।

ସନ୍ତୋଷ : ସାବିତ୍ରୀ ! ମତେ ଆଉ ଅଧିକ ରଗାଅନା କହୁଛି ? ବାକ୍ସ ଶୀଘ୍ର ବାହାର କର ।

ସାବିତ୍ରୀ : କହିଲି ତ ମୁଁ ସେକଥା କିଛି ଜାଣେନି ।

ସନ୍ତୋଷ : (ଦ୍ରୁତ ପଦରେ ଭିତରକୁ ପ୍ରବେଶ କଲେ ଓ ହାତରେ ଗୋଟେ ଠେଙ୍ଗା ଧରି ଆସିଲେ । ଠେଙ୍ଗାଟକୁ ଉପରକୁ ଟେକି ସାବିତ୍ରୀ ଆଡ଼କୁ ପିଟିବା ଉଦ୍ଦେଶ୍ୟରେ ଅଗ୍ରସର ହେଲେ) ବାକ୍ସ କାଢ । ନଚେତ୍ ମୁଣ୍ଡକୁ ପିଟି ସେଥିରୁ ବଶ ବାହାର କରିଦେବି ।

ସାବିତ୍ରୀ : ଭୟରେ ଚିତ୍କାର କରି ଅନୁରାଧା ପଛରେ ଆତ୍ମରକ୍ଷା ପାଇଁ ରହିଗଲା । (ଅନୁରାଧା ଭୟରେ ପ୍ରାୟ ଚିତ୍କାର କରି ଉଠିଲା)

ଅନୁରାଧା : ବାପା ! (ଠେଙ୍ଗା ଧରିବାକୁ ହାତ ବଢାଉଥିଲା)

ସନ୍ତୋଷ : (ଉଗ୍ରସ୍ୱରରେ) ଚୋପ୍, ତୁ ସେଇଠି ସେମିତି ଠିଆ ହୋଇଥା । ଖବରଦାର ଆଗକୁ ଆସିବୁନି । ଏ ବିଟାଙ୍କ କଥା ମୁଁ ଆଗ ଆଜି ଛିଣ୍ଡେଇସାରେ । ତା'ପରେ ସେ ଛତରାକଥା ବୁଝିବି ।

ଅନୁରାଧା : ତମ ଗୋଡ଼ଧରୁଛି । ତୁମେ ଚୁପ ହୁଏ ବାପା ।

ସନ୍ତୋଷ : ନା, ଚୁପ୍ ହେବାର ବେଳ ଚାଲିଯାଇଛି ମା । ମୋର ଯଥେଷ୍ଟ ଆଗରୁ ମୁହଁ ଖୋଲିବା ଉଚିତ ଥିଲା । ଯେଉଁ ପରିବାରରେ ଶଶୁରମାନେ ମୋରି ପରି ମୂକ ଆଉ ବଧିର ହୋଇଯାଆନ୍ତି, ଯେଉଁ ପରିବାରରେ ଶାଶୁ ଆଉ ନଣନ୍ଦମାନେ ପରିବାର ମର୍ଯ୍ୟାଦାର ଲକ୍ଷ୍ମଣରେଖାକୁ ଅତିକ୍ରମକରି ଦାଣ୍ଡକୁ ଚାଲିଯାଆନ୍ତି, ସେଇଘରେ ଯୌତୁକ ଯନ୍ତ୍ରଣାରେ ଜର୍ଜରିତା ହୋଇ ବୋହୂ ମରେ । ଆଉ ଶାଶୁ, ଶଶୁର, ନଣନ୍ଦଙ୍କ ହାତରେ ହାତକଡ଼ି ପଡ଼େ । ତେବେ ମୁଁ ଆଜି କେବଳ ଘରୁ ବାହାରି ଦାଣ୍ଡରେ ଠିଆହେବାରୁ ରକ୍ଷାକରିନି ମା, ମୋ ପରିବାରକୁ ଧ୍ୱଂସ ମୁଖରୁ ରକ୍ଷାକରିଛି ।

# ନଈବଢ଼ିର ଉପକାରିତା

ସରକାରୀକଳ ସାହାଯ୍ୟରେ ଦୈବୀଦୁର୍ବିପାକ ସମୟରେ କ୍ଷତିଗ୍ରସ୍ତ ଲୋକମାନଙ୍କୁ କିପରି ସାହାଯ୍ୟକରାଯାଏ ଓ ତାପୂର୍ବରୁ ସରକାରୀକଳ କିପରି ଭାବରେ ନିଜକୁ ପ୍ରସ୍ତୁତ କରେ ତା'ର ଏକ ଛୋଟ ନମୁନା ଏହି କ୍ଷୁଦ୍ର ନାଟିକା । ଆଶାକରେଁ ଏହା ଭବିଷ୍ୟତରେ କିଛିମାତ୍ରାରେ କାହାରିକୁ ହେଲେ ବି ପ୍ରଭାବିତ କରିବ ।

## ଭୂମିକାରେ

**ସ୍ତ୍ରୀ**

ଅନୁପମା - ଅବିବାହିତା ସୁନ୍ଦରୀ ଯୁବତୀ

**ପୁରୁଷ**

ବଡ଼ ହାକିମ - ପ୍ରୌଢ଼

ସମସ୍ତ ବିଡିଓ - ଯୁବକ

ସ୍ଥାନୀୟ ମୁଖ୍ୟ - ପ୍ରୌଢ଼

ବଡ଼ବାବୁମାନେ - ପ୍ରୌଢ଼

ଦାମବାବୁ - ପ୍ରୌଢ଼

ସୁଦାମବାବୁ - ପ୍ରୌଢ଼

ସୁବଳବାବୁ - ପ୍ରୌଢ଼

(ଗୋଟିଏ ଡ଼ାକ ବଙ୍ଗଳାର ବୈଠକଖାନା । କେତେଜଣ ସରକାରୀ କର୍ମଚାରୀ ବ୍ୟସ୍ତ ବିବ୍ରତ ଅବସ୍ଥାରେ ଅପେକ୍ଷା କରିଛନ୍ତି । ସମସ୍ତେ ଯୁବକ । ଆସନ୍ନ ବନ୍ୟା ବିପତ୍ତିପାଇଁ ସେମାନଙ୍କ ମନରେ ଉତ୍କଣ୍ଠା ସୃଷ୍ଟି ହୋଇଛି । ସରକାରୀ ନିର୍ଦ୍ଦେଶମତେ ସମସ୍ତ ପ୍ରକାର ପ୍ରସ୍ତୁତି ସେମାନେ ଆଗରୁ କରିସାରିଛନ୍ତି । ପ୍ରସ୍ତୁତି ପର୍ବର ଅନୁଧାନ ମଧ କରାଯାଇଛି । ମାତ୍ର ଏବେ ଆସିଛି ପରୀକ୍ଷାର ବେଳ । ମାସାଧିକ କାଳ ରିହରସାଲ୍ ପରେ ନାଟକ ମଞ୍ଚସ୍ଥ ହେବା ସଂଧ୍ୟାରେ ନୂଆ ଅଭିନେତାମାନଙ୍କ ମାନସିକ ଅବସ୍ଥା ଯେମିତି ହୁଏ, ଏଠାରେ ଉପସ୍ଥିତ ଥିବା ଯୁବ ସରକାରୀ କର୍ମଚାରୀମାନଙ୍କ ମାନସିକ ଅବସ୍ଥା ଠିକ୍ ସେମିତି ହୋଇଛି । ଅସଲ କଥା ହେଉଛି ସେମାନେ ଆଗରୁ କେବେ ଅସଲ ବନ୍ୟାର ସମ୍ମୁଖିନ ହୋଇନାହାଁନ୍ତି । ସରକାରୀ ଫାଇଲ୍‌ରେ ଯାହା ବନ୍ୟା ଦେଖିଛନ୍ତି । ତେଣୁ ବନ୍ୟାଜନିତ କ୍ଷୟକ୍ଷତିର ବାସ୍ତବଜ୍ଞାନ ନଥିବା ଅଫିସରମାନେ ବଡ଼ ବିବ୍ରତ ହୋଇପଡିଛନ୍ତି । ପୁଣି ସେମାନଙ୍କ ପ୍ରସ୍ତୁତିକୁ ଶେଷବାରପାଇଁ ଠିକ୍ ବନ୍ୟା ପୂର୍ବରୁ ପରଖିନେବାର ବେଳଆସିଛି । ସ୍ୱୟଂବଡ଼ ହାକିମ ଆଜି ଆସି ପ୍ରସ୍ତୁତି କାର୍ଯ୍ୟ ଦେଖିବେ । ସେଥିପାଇଁ ସମସ୍ତେ ବିବ୍ରତ ।

ଦୂରରୁ ମଟର ହର୍ଣ୍ଣ ଶୁଣାଗଲା । ସମସ୍ତେ ଆଉଥରେ ଚଞ୍ଚଳ ହେଇ ଉଠିଲେ । ଡାକବଙ୍ଗଳା ସମ୍ମୁଖରେ କାର ରହିବାର ଶବ୍ଦ । ଗାଡ଼ି ଦ୍ୱାର ଖୋଲି ପୁଣି ବନ୍ଦ ହେବାର ଶବ୍ଦ । ପରେପରେ ପୋଲିସ୍‌ର କର୍କଶ ସ୍ୱର - ଗାର୍ଡ ଅଫ୍ ଅନର ଦେବାର ଶବ୍ଦ । ପରେପରେ ବୈଠକଖାନା ମଧକୁ ପ୍ରବେଶ କଲେ ଜଣେ ପଦସ୍ଥ ସରକାରୀ ଅଫିସର । ପଛେପଛେ ଅନ୍ୟ ଜଣେ । ଦ୍ୱିତୀୟ ଜଣକ ବୋଧହୁଏ ସ୍ଥାନୀୟ ମୁଖ୍ୟ । ପଦସ୍ଥ ହାକିମ ଆସନ ଗ୍ରହଣକରି ଅନ୍ୟମାନଙ୍କୁ ବସିବାକୁ ନିର୍ଦ୍ଦେଶ ଦେଲେ । ସମସ୍ତେ ବସିସାରିବା ପରେ ଆରମ୍ଭ କଲେ ପଦସ୍ଥ ହାକିମ:

ବଡହାକିମ : ଆପଣମାନଙ୍କୁ ମୁଁ ଏଇ ରିଭିୟୁମିଟିଙ୍ଗ୍‌କୁ ୱେଲ୍‌କମ୍ କରୁଛି । ଆପଣ ସମସ୍ତେ ଜାଣିଥିବେ ଯେ ପ୍ରକୃତି ଆମ୍ଭମାନଙ୍କ ସହିତ ସବୁଦିନ ବିଦ୍ରୁପ କରୁଛି । ସେ ବର୍ଷ ମହାବାତ୍ୟାରେ କ୍ଷତିର ଭରଣା ଶେଷହେବା ପୂର୍ବରୁ ମରୁଡି ଆସି ଆମ ରାଜ୍ୟର ମେରୁଦଣ୍ଡକୁ ଭାଙ୍ଗି ଦେଇଗଲା । ସେହି ପ୍ରାକୃତିକ ବିପଦରୁ ରକ୍ଷାପାଇବା ଆଗରୁ ଆସିଗଲା ବର୍ଷା । ଏପରି ଲଗାଣବର୍ଷା ମୁଁ ମୋ ଚାକିରୀ ଜୀବନରେ କେବେହେଲେ ଦେଖିନଥିଲି ।

ସେହି ବର୍ଷା ସାଙ୍ଗରେ ଆସିଛି ବନ୍ୟା । ଏ ବନ୍ୟାର କ'ଣ ହେବ ତାହା କଳନା ବି କରାଯାଇ ପାରୁନି । କିନ୍ତୁ ବନ୍ୟାରେ ଯେଉଁ ସମ୍ଭାବ୍ୟ କ୍ଷତି ହେବ ତାର ମୁକାବିଲା କରିବାକୁ ଆମ୍ଭମାନଙ୍କୁ ଦାୟିତ୍ୱ ଦିଆଯାଇଛି । ସେଥିପାଇଁ ଆପଣମାନେ ମଧ୍ୟ ପ୍ରସ୍ତୁତ ଅଛନ୍ତି । ତେବେ ମତେ କୁହନ୍ତୁ ଆପଣମାନଙ୍କର ଦାୟିତ୍ୱରେ ଥିବା ଅଞ୍ଚଳମାନଙ୍କରେ କେତେ ଗ୍ରାମକୁ ବଳିଆଅଞ୍ଚଳ ବୋଲି ଚିହ୍ନଟ କରାଯାଇଛି । ସେ ଅଞ୍ଚଳରେ ଲୋକସଂଖ୍ୟା କେତେ ? ଗୋରୁଗାଈ ସଂଖ୍ୟା କେତେ ? ନିକଟରେ ଆଶ୍ରୟସ୍ଥଳ କେଉଁଠି ? ଆଉ ଖାଦ୍ୟସାମଗ୍ରୀର ଡିପୋ କେଉଁଠି । କେତେ ଦିନ ହେବ ବନ୍ୟାପ୍ରଚାର କାର୍ଯ୍ୟ ଚାଲିଛି ? ଆଜିଯାଏ କେତେ ଲୋକ ଆସି ଆଶ୍ରୟସ୍ଥଳରେ ରହିଲେଣି ? ମୁଁ ଜଣଜଣ କରି ପଚାରୁଛି । ତାର ସଠିକ୍ ଉତ୍ତର ଦିଅନ୍ତୁ । ରିପୋର୍ଟ ଆଜି ସରକାରଙ୍କୁ ଫ୍ୟାକ୍ସ ମେସେଜ୍ ଆକାରରେ ଯିବ । (ଜଣଙ୍କ ଆଡକୁ ଆଙ୍ଗୁଳି ଦେଖାଇ କହିଲେ) you tall young man ପ୍ରଥମେ give your identity, then carry on ।

ଲକ୍ଷ୍ମଣପୁର ବିଡିଓ : Sir ! ମୁଁ B.D.O ଲକ୍ଷ୍ମଣପୁର । ମୋ ନାମ ରତ୍ନାକର ଚଉନି । ମୁଁ ଗତମାସ ସାତ ତାରିଖ ଦିନ ସେଠାରେ ଜଏନ୍ କରିଛି ।

ବଡହାକିମ : Don't spoil time by giving absurd information । କେତେ ଗାଁ ବଳିଆ ଅଞ୍ଚଳଭାବରେ ଚିହ୍ନଟ ହୋଇଛି ?

ଲକ୍ଷ୍ମଣପୁର ବିଡ଼ିଓ : ସାର୍ ! ଶହେ ଏକତ୍ରୋରୀ ।

ବଡହାକିମ : ସେ ସବୁ ଗାଁର ଲୋକ ସଂଖ୍ୟା କେତେ ?

ଲକ୍ଷ୍ମଣପୁର ବିଡ଼ିଓ : ୩୭୯୯୨

ବଡହାକିମ : ପୁରୁଷ କେତେ, ସ୍ତ୍ରୀ କେତେ ?

ଲକ୍ଷ୍ମଣପୁର ବିଡ଼ିଓ : ପୁରୁଷ ୧୯୦୦୦, ସ୍ତ୍ରୀ ୧୮୦୦୦ ।

ବଡହାକିମ : ପିଲା...... ?

ଲକ୍ଷ୍ମଣପୁର ବିଡ଼ିଓ : (ଫାଇଲ ଆଡେଇଲେ ଓ ନୀରବ ରହିଲେ)

ବଡହାକିମ : ଆଚ୍ଛା ହେଉ । ସେମାନଙ୍କ ମଧ୍ୟରୁ General caste କେତେ ଆଉ ସିଡୁଲ୍‌ଡ୍‌କାଷ୍ଟ କେତେ ?

ଲକ୍ଷ୍ମଣପୁର ବିଡ଼ିଓ : (ଡର ଡର ହୋଇ ଫାଇଲ୍‌ରୁ ଖୋଜି ନିରବ ରହିଲେ)

ବଡହାକିମ : ଆଚ୍ଛା ସିଡ୍ୟୁଲ୍‌ଡ଼ଟ୍ରାଇବ୍ ଇନ୍‌ଫରମେସନ୍ ଅଛି କି ?

ଲକ୍ଷ୍ମଣପୁର ବିଡ଼ିଓ : (ଫାଇଲ ଖେଳେଇ ନିରବ)

ବଡହାକିମ : ହଉ । Old age pensioner ?

ଲକ୍ଷ୍ମଣପୁର ବିଡ଼ିଓ : ସାର୍ ! ସାତଶହ ନଅ ଜଣ ।

ବଡହାକିମ : ସେମାନଙ୍କ ଭିତରୁ ପୁରୁଷ କେତେ, ସ୍ତ୍ରୀ କେତେ ?

ଲକ୍ଷ୍ମଣପୁର ବିଡ଼ିଓ : ପୁରୁଷ ପାଞ୍ଚଶହ ଜଣ ଆଉ ସ୍ତ୍ରୀ ଦୁଇଶହ ନଅଜଣ ।

ବଡହାକିମ : ସେମାନଙ୍କ ସଂଖ୍ୟାରେ ଏତେ ଅସମାନତା କାହିଁକି ?

ଲକ୍ଷ୍ମଣପୁର ବିଡ଼ିଓ : (ନିରବ)

ବଡହାକିମ : ପୁରଷମାନଙ୍କର ଭିତରେ ଆଦିବାସୀ, ହରିଜନ ଓ ସବର୍ଣ୍ଣଙ୍କର ହିସାବ ଅଛି ?

ଲକ୍ଷ୍ମଣପୁର ବିଡ଼ିଓ : ନା ।

ବଡହାକିମ : ମହିଳାମାନଙ୍କ ତାଲିକାରେ ସେମିତି ଆଦିବାସୀ, ହରିଜନ ଆଉ ସବର୍ଣ୍ଣମାନଙ୍କର ହିସାବ ଅଛି ?

ଲକ୍ଷ୍ମଣପୁର ବିଡ଼ିଓ : ନା ।

ବଡହାକିମ : ସବୁ ମହିଳାମାନଙ୍କ ଭିତରେ ଗର୍ଭବତୀ ମହିଳାମାନଙ୍କ ହିସାବ ଅଛି ?

ଲକ୍ଷ୍ମଣପୁର ବିଡ଼ିଓ : ନା ।

ବଡହାକିମ : ତା'ହେଲେ ତୁମେ ଏଠିକି କାହିଁକି ଆସିଛ ? ଯାହା ପଚାରିଲେ, ନା, ନା, ନା । ଖାଲି ନା, ନାର ସ୍ୱର ଲଗେଇଛ ।

ଲକ୍ଷ୍ମଣପୁର ବିଡ଼ିଓ : (ନିରବ)

ସ୍ଥାନୀୟ ମୁଖ୍ୟ ହାକିମ: (ନିମ୍ନସ୍ୱରରେ) ସିଏ ଆମ ଜିଲ୍ଲାମନ୍ତ୍ରୀଙ୍କ ସାନଭାଇଙ୍କର ଶଳାଙ୍କର ମାଉସୀପୁଅଭାଇ ସାର୍ !

ବଡହାକିମ : (ଗମ୍ଭୀର ହୋଇ) ଏସବୁ ଖବର ସଂଗ୍ରହକରି ମତେ faxରେ ଜଣାଅ । ଅନ୍ୟ ସମସ୍ତେ ବି ଶୀଘ୍ର ଏହିସବୁ ଖବର ମତେ ଜଣାଇ ଦେବ । ନଚେତ ବିରୋଧିଦଳ ଆମ ସରକାରଙ୍କୁ ପ୍ରଶ୍ନକଲେ କି ଉତ୍ତର ଦେବା ?

ଲକ୍ଷ୍ମଣପୁର ବିଡ଼ିଓ : ସାଙ୍ଗେ ସାଙ୍ଗେ ଏସବୁ ଖବର ମୁଁ ସଂଗ୍ରହ କରୁଛି ସାର୍ ।

ବଡହାକିମ : ହଁ, ବନ୍ୟା ସମ୍ପର୍କରେ ଠିକ୍ ଠିକ୍ ପ୍ରଚାର ଚାଲିଛି ତ ? You young man ?

କନକପୁର ବିଡ଼ିଓ : ମୋ ନାଁ ରତ୍ନକର ଷଡ଼ଙ୍ଗୀ । ପ୍ରଚାରକାର୍ଯ୍ୟ ଠିକ୍ ଚାଲିଛି ସାର୍ ।

ବଡହାକିମ : କେତେଦିନ ହେଲା ପ୍ରଚାର ଚାଲିଛି ?

କନକପୁର ବିଡ଼ିଓ : ତିନିଦିନ ହେଲା, ସାର୍ !

ବଡହାକିମ : ଭେରି ବ୍ୟାଡ୍ । ତୁମକୁ ବନ୍ୟା ବିଷୟରେ ପ୍ରଚାର କରିବାକୁ ସେ ଦିନରୁ ଚିଠି ଆସିଲାଣି । ମାତ୍ର ତୁମେ ତିନିଦିନହେଲା ପ୍ରଚାର କରୁଛ ?

କନକପୁର ବିଡ଼ିଓ : ଯେଉଁଦିନ ଚିଠିମାଳିଲା, ମୁଁ ସେଇଦିନରୁ ପ୍ରଚାରକାମ ଆରମ୍ଭ କରିଛି, ସାର୍ ।

ବଡହାକିମ : Don't make such irresponsible statement । ଚିଠି ମିଳିଲା କ'ଣ ? ଚିଠି ମୋ ଅଫିସରୁ କେବେ ଇସ୍ୟୁ ହେଲା, ସେ ଖବର ରଖିଲନି ?

କନକପୁର ବିଡ଼ିଓ : Sorry, sir !

ବଡହାକିମ : What sorry ? you will be.......

ସ୍ଥାନୀୟ ବଡହାକିମ : (ବଡହାକିମଙ୍କ କାନରେ କହିଲେ) ସିଏ ମୁଖ୍ୟମନ୍ତ୍ରୀଙ୍କ ବ୍ୟକ୍ତିଗତ ସଚିବଙ୍କ ଭାବିଜ୍ୱାଇଁଙ୍କ ଭାବିଶଳା ସାର୍ ।

ବଡହାକିମ : କେତେଟା ମାଇକ୍ ଲଗାଇଛ ?

କନକପୁର ବିଡ଼ିଓ : (ଟିକେ ଆଶ୍ୱସ୍ତହୋଇ) ଗୋଟେ ସାର୍ ।

ବଡହାକିମ : ଅଧିକ ମାଇକ ଲଗାଇ ମନଦେଇ ପ୍ରଚାର କରାଅ । ଏଇଟା ବଡ଼ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ।

କନକପୁର ବିଡ଼ିଓ : Yes sir । ମୁଁ ସାଙ୍ଗେସାଙ୍ଗେ ସେସବୁ ବ୍ୟବସ୍ଥା କରୁଛି, ସାର୍ ।

ବଡହାକିମ : ଆଚ୍ଛା; you young man ! ତୁମେ କୋଉଠି, କେତେଟା ଆଶ୍ରୟସ୍ଥଳ ଠିକ୍ କରିଛ ?

ହରିଦାସପୁର ବିଡ଼ିଓ : Sir ! ମୁଁ ଅଲେଖ ମାଝୀ, ହରିଦାସପୁର ବିଡ଼ିଓ । ଆମ ବ୍ଲକରେ ମୁଁ ନଅଟି ସ୍କୁଲଘରକୁ ଆଶ୍ରୟସ୍ଥଳି ରୂପେ ଘୋଷଣା କରିଛି ।

ବଡହାକିମ : ଘୋଷଣା କରିଛ, ଖୁବ୍ ଭଲ କରିଛ । ତେବେ ଆଶ୍ରୟ ସ୍ଥଳରେ ରହିବାପାଇଁ କ'ଣ ବ୍ୟବସ୍ଥା କରିଛ ?

ହରିଦାସପୁର ବିଡ଼ିଓ : ସ୍କୁଲ ସବୁକୁ ଛୁଟୀ କରିଦେଇଛି ସାର୍ । ଘରର ଚାବି ପଞ୍ଚାୟତ ପିଅନ ଜିମାରେ ରଖାହେଇଛି ।

ବଡ଼ହାକିମ : ଭଲ, ଭଲ ।

ହରିଦାସପୁର ବିଡ଼ିଓ : ଏକଥା ବି ଘୋଷଣା କରିଦେଇଛି, ସାର୍ !

ବଡ଼ହାକିମ : ଆଉ କଣ ବ୍ୟବସ୍ଥା କରିଛ ?

ହରିଦାସପୁର ବିଡ଼ିଓ : ଆଉ ତ କିଛି କରିନାହିଁ, ସାର୍ ।

ବଡ଼ହାକିମ : ତେବେ ଲୋକ ଆସିଲେ ରହିବେ କେମିତି ? ମାନେ ସ୍ତ୍ରୀଲୋକ, ପୁରୁଷ ଲୋକମାନଙ୍କର ରହିବାପାଇଁ ଭିନ୍ନଭିନ୍ନ ବ୍ୟବସ୍ଥା ହୋଇଛି ନା ପୁଣି ସେଥିରେ ନାରୀ ନିର୍ଯ୍ୟାତନା, ବଳାତ୍କାର, ଧର୍ଷଣ ପରି ଅଭିଯୋଗମାନ ଆସିବ ? ଏହି ଧର୍ଷଣକୁ ରୋକିବାରେ ବ୍ୟର୍ଥ ହୋଇଥିବାରୁ ଆମ ରାଜ୍ୟରେ ଜଣେ ମୁଖ୍ୟଙ୍କର ଚାକିରୀ ଗଲା । ସେଥିପାଇଁ ସବୁଆଡକୁ ଧ୍ୟାନରଖି ବ୍ୟବସ୍ଥା କରିଛ କି ନାହିଁ ?

ହରିଦାସପୁର ବିଡ଼ିଓ : ମୁଁ ଚେଷ୍ଟା କରିଛି, ସାର୍ ।

ବଡ଼ହାକିମ : ସ୍କୁଲ ଘରର ଭିନ୍ନଭିନ୍ନ କୋଠରୀକୁ ଭିନ୍ନଭିନ୍ନ ନାମରେ ପ୍ରଥମେ ନାମିତ କରିଦିଅ । ଯଥା- ନେତାଜୀ ଆଶ୍ରୟସ୍ଥଳ, ଉତ୍କଳକେଶରୀ ଆଶ୍ରୟସ୍ଥଳ, ଚାଖିଖୁଣ୍ଟିଆ ଆଶ୍ରୟସ୍ଥଳ, ବିର୍ଶାମୁଣ୍ଡା ଆଶ୍ରୟସ୍ଥଳ, ଚକରା ବିଶୋୟୀ ଆଶ୍ରୟସ୍ଥଳ, ଲକ୍ଷ୍ମଣ ନାୟକ ଆଶ୍ରୟସ୍ଥଳ, ସରୋଜିନୀ ନାଇଡୁ ଆଶ୍ରୟସ୍ଥଳ, ଅରୁଣା ଆସଫ୍‌ଅଲ୍ଲି ଆଶ୍ରୟସ୍ଥଳ, ମଦରଟେରେସା ଆଶ୍ରୟସ୍ଥଳ । ନାମ ଅନୁସାରେ ଲୋକମାନଙ୍କୁ ନେଇ ସେଇ କୋଠରୀମାନଙ୍କରେ ରଖିବ । ଆଶ୍ରୟ ପ୍ରାର୍ଥୀମାନଙ୍କୁ ରଖିଲାବେଳେ, ଖବରଦାର ରିଜର୍ଭେସନ୍‌ର ପଏଣ୍ଟ ପ୍ରତି ଧ୍ୟାନ ଦେଉଥିବ । ସେଥିରେ ଏପଟ ସେପଟ ହେଲେ ମୁଁ ତୁମ ଚାକିରୀ ଆଦୌ ରଖିପାରିବି ନାହିଁ ।

ସ୍ଥାନୀୟବଡ଼ହାକିମ : ସାର୍ ! ଏ ଉପଦେଶ ଅତ୍ୟନ୍ତ ଉପାଦେୟ, ସାର ! ଗତ ବାତ୍ୟାବେଳେ କିନ୍ତୁ ଆଶ୍ରୟସ୍ଥଳ ଗୁଡାକ ଏପରି ଭାଗ ନକରି ବହୁତ ଭୁଲ୍ ହୋଇଗଲା ସାର୍ ! ଏହିପରି ଆଉ ଯେତେ

ବହୁମୂଲ୍ୟ ଉପଦେଶ ଅଛି, ସେଗୁଡ଼ିକ ଆଜିର ଏଇ ମିଟିଂରେ କହିଦିଅନ୍ତୁ । ମୁଁ ସେ ସବୁକୁ ନୋଟ୍ କରି ଅର୍ଡର ଆକାରରେ ଏମାନଙ୍କୁ ଦେଇ ଦେବି । ସରକାରଙ୍କ ପାଖକୁ କପିଟ ନିଶ୍ଚୟ ଯିବ । କେନ୍ଦ୍ରୀୟ ଦଳ ଆସିଲେ, ସେ କପିକୁ ଦେଖି ଆଶ୍ଚର୍ଯ୍ୟ ହୋଇଯିବେ । ଆପଣ ସାର୍ ଦେଖିବେ; ଆମ ଦେଶରେ ଆଉ ଯେଉଁଠି ଯେତେବେଳେ ଯେପରି ପ୍ରାକୃତିକ ଦୁର୍ବିପାକ ପଡ଼ିବ, ସେତେବେଳେ ସେଇସବୁ ରାଜ୍ୟରେ ଏହି ଫର୍ମୁଲା ଅନୁସରଣ କରାହେବ । କିଛି ବର୍ଷ ମଧରେ ଏ ଫର୍ମୁଲା 'ପଟ୍ଟନାୟକ ଫର୍ମୁଲା' ନାମରେ ପ୍ରସିଦ୍ଧ ଲାଭକରି ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିବ ? ଆଗାମୀ ଦିନରେ ପୃଥିବୀରେ ଭବିଷ୍ୟତ ବଂଶଧରମାନେ ଏହା ଉପରେ ଗବେଷଣା କରି ଆପଣଙ୍କ ହୃଦୟରେ ମାନବିକତାର ମୂଲ୍ୟବୋଧ ଉପରେ ସନ୍ଦର୍ଭ ଲେଖି ସମଗ୍ର ମାନବ ସମାଜକୁ ନୂତନ ଆଲୋକ ବର୍ତ୍ତିକା ଦେଖାଇବେ ।

ବଡହାକିମ : ମୁଁ ଏ ବିଷୟରେ ଅନେକ ଚିନ୍ତା କରିଛି, ମିଷ୍ଟର ସାହୁ ।

ସ୍ଥାନୀୟ ବଡହାକିମ : ସେ କଥାତ ନିଶ୍ଚୟ ସାର୍ ।

ବଡହାକିମ : ଆମ ରାଜ୍ୟରେ ଯେଉଁ ମାନବ ଅଧିକାର ବାଲା ଦଳଦଳ ହୋଇ ବୁଲୁଛନ୍ତି, ଏଥିରେ ତାଙ୍କ ମୁହଁ ଏକାବେଳକେ ବନ୍ଦ ହୋଇଯିବ ।

ସ୍ଥାନୀୟ ବଡହାକିମ : ହଁ, ସାର୍ ! ସେମାନେ ସବୁବେଳେ ଆସି ବହୁତ ଅସୁବିଧା ସୃଷ୍ଟି କରୁଛନ୍ତି । ସେ କଥାକୁ ଆଖିଆଗରେ ରଖି ଆଉକିଛି ଉପଦେଶ ଦିଅନ୍ତୁ, ସାର୍ ।

ବଡହାକିମ : ହଁ, ଆହୁରି ମନେରଖ । ସ୍କୁଲ ମାନେ ଆଶୟସ୍ଥଳ ପଛପଟେ କିଛି ଅଞ୍ଚଳକୁ ଘେରାବନ୍ଦି କରିଦେଇ ସେଥିରେ ଶୌଚାଳୟ ବୋଲି ଲେଖିଦେବ । ସେଥିରେ ବି male / female ବ୍ୟବସ୍ଥା ରଖିଥିବ ।

ହରିଦାସପୁର ବିଡ଼ିଓ : ହଁ, ସାର୍ !

ବଡହାକିମ : ଆଚ୍ଛା ରୋଷେଇବାସପାଇଁ କ'ଣ କରିଛ ?

ହରିଦାସପୁର ବିଡ଼ିଓ : କିଛି କରାଯାଇନାହିଁ ସାର୍ ?

ବଡହାକିମ : (ବିରକ୍ତରେ) ଆଉ କ'ଣ କରିଛ, ସାର୍ ?

ହରିଦାସପୁର ବିଡ଼ିଓ : ସେଥିପାଇଁ ତ କିଛି Instruction ନାହିଁ, ସାର !

ବଡହାକିମ : ତୁମେ ଗୋଟିଏ ବୁଦ୍ଧୁ । (ବିରକ୍ତ ହୋଇ)

ସ୍ଥାନୀୟ ବଡହାକିମ : ସାରଙ୍କ Instruction ଶୁଣ । ସାର୍ ଯାହା କହୁଛନ୍ତି, ଟିପାଖାତାରେ ଲେଖିନିଅ । ଆଉ ଶିଘ୍ର ଶିଘ୍ର ସେ ସବୁର ବ୍ୟବସ୍ଥା କର ।

ବଡହାକିମ : ସବୁକଥା Instruction ରେ କୁହାଯାଏନା । ଏଇଧର ବନ୍ୟା ଆସିଗଲା । ଘରଭାଙ୍ଗି ଗାଁରେ ପାଣି ପଶିଗଲା । ଲୋକେ ଆଶ୍ରୟସ୍ଥଳରେ ପହଞ୍ଚିଗଲେ ଆଉ ଯେଝାଯେଝା କୋଠରୀରେ ରହିଗଲେ । ସେ ଖବର ତୁମେ ଉପରକୁ ପଠାଇବ । ପରଦିନ ଧର ରାଜ୍ୟ ମୁଖ୍ୟ ଆସିଲେ । ସିଏତ ଆଉ ଖାଲି ହାତରେ ଲୋକଙ୍କୁ ଦେଖା କରିବେନି ? ଗରମ ଗରମ ରନ୍ଧାଖାଦ୍ୟକୁ ସେ ନିଜହାତରେ ଆଶ୍ରୟସ୍ଥଳରେ ଥିବା ଲୋକମାନଙ୍କୁ ପରଷୁଥିବେ । T.V. କ୍ୟାମେରାରେ ସେ ଫଟୋ ଉଠିବ । ସେହି ଦିନ ସଂଧ୍ୟା ସୁଦ୍ଧା ତାହା T.V.ରେ ଦେଖାଇ ଦିଆଯିବ । ବିରୋଧି ଦଳଙ୍କ ମୁହଁ ବନ୍ଦ ହେଇଯିବ । କେନ୍ଦ୍ରରୁ ଅଧିକ ସାହାଯ୍ୟ ଆସିବ ।

ସ୍ଥାନୀୟ ବଡହାକିମ : ହଁ ସାର୍ ! ଠିକ୍ ଅଛି ସାର୍ । Instruction ରୁ କ'ଣ ମିଳିବ । ସାର କହିଲେ, ହେଲା । ସିଏ କ'ଣ Instruction ନୁହେଁ ? ଶୀଘ୍ର ଏ pointକୁ ନୋଟ୍ କରି ବ୍ୟବସ୍ଥା କର ।

ଅନ୍ୟଜଣେ ବିଡ଼ିଓ : ସାର୍ ! ମୋ ମୁଣ୍ଡକୁ କିନ୍ତୁ ଆଉ ଗୋଟେ କଥା ଆସୁଛି । ଅନୁମତି ମିଳିଲେ କୁହନ୍ତି, ସାର୍ !

ସ୍ଥାନୀୟ ବଡହାକିମ : କୁହ, ଡରୁଛ କାହିଁକି, କୁହ ।

ବିଡିଓ : ସାର୍ ! ଲୋକମାନେ ବସି ଖାଇବା ପୂର୍ବରୁ, ସେମାନଙ୍କୁ ଚିହ୍ନଟ କରିବାରେ ସୁବିଧାପାଇଁ, ଗୋଟେ ଗୋଟେ ଛୋଟଛୋଟ ବୋର୍ଡଲେଖି ତାଙ୍କ ବେକରେ ଝୁଲେଇ ଦେଲେ ହୁଅନ୍ତାନି ? ମାନେ, ମେଲ୍ ଜେନେରାଲ କାଷ୍ଟ - 'M.G.C.' ଫିମେଲ

ଜେନେରାଲକାଷ୍ଟ - 'F.G.C.' ମେଲ୍ ସିଡୁଲ୍‌ଡ୍‌କାଷ୍ଟ - 'M.S.C.' ଫିମେଲ୍ ସିଡୁଲ୍‌ଡ୍‌କାଷ୍ଟ 'F.S.C.' ମେଲ ସିଡୁଲଡ୍ ଟ୍ରାଇବ୍ -M.S.T.' ଫିମେଲ୍ ସିଡୁଲଡ୍ ଟ୍ରାଇବ୍ - 'F.S.T' etc, etc.

ସ୍ଥାନୀୟ ବଡ଼ ହାକିମ : ଖୁବ୍ ଭଲକଥା । ସେମିତି କରିଦେଲେ, ଚିହ୍ନିବାକୁ ସୁବିଧା ହେବ । ରୋଷ୍ଟର ପଏଣ୍ଟ ବି ଜଣାପଡ଼ିଯିବ, ମିଡ଼ିଆଲୋକେ, ହ୍ୟୁମାନ୍ ରାଇଟ୍‌ସ୍ ଲୋକେ ଆମକୁ ପରେ ଆଉ ଦୋଷଦେଇ ପାରିବେନି । ଆମେ ଜାତିଗତ ଅସୂୟା ନରଖି, ପ୍ରବଳ ବନ୍ୟାପରି ପ୍ରାକୃତିକ ବିପର୍ଯ୍ୟୟ ସମୟରେ ବି ରିଜର୍ଭେସନ୍‌ର ବ୍ୟତିକ୍ରମ କରୁନାହୁଁ ବୋଲି ପ୍ରମାଣିତ ହୋଇଯିବ ।

ବଡ଼ହାକିମ : ଠିକ୍ ଯେ ? ତେବେ ମେଲ୍ ଫିମେଲ୍ ଚିହ୍ନିବାପାଇଁ ବୋର୍ଡ଼ରେ 'M' ବା 'F' ନଲେଖିଲେତ ଚଳିବ ।

ବିଡ଼ିଓ : ମତେ କ୍ଷମା କରିବେ ସାର୍ । ଆଜିକାଲି ପୋଷାକରୁ ମେଲ୍, ଫିମେଲ୍ ଚିହ୍ନିବା ବଡ଼କଷ୍ଟକର ବ୍ୟାପାର । ଜିନ୍‌ସ୍‌ପ୍ୟାଣ୍ଟ ଆଉ ଟିସାର୍ଟ ପିନ୍ଧିଦେଲେ, ସମସ୍ତେ ଏକାଭଳିଆ ଦେଖାଯାଉଛନ୍ତି । ଆଉ ମୁଣ୍ଡବାଳ କଥା ଭାବୁଛନ୍ତି କି ସାର୍ ? ଆଜିକାଲି ଝିଅମାନେ- ସ୍ତ୍ରୀଲୋକମାନେ ବା ସ୍ତ୍ରୀଲିଙ୍ଗମାନେ ମୁଣ୍ଡବାଳ ଛୋଟଛୋଟ କରି କାଟୁଛନ୍ତି । ପୁଅମାନେ - ପୁରୁଷମାନେ ଅର୍ଥାତ୍ ପୁଲିଙ୍ଗମାନେ ମୁଣ୍ଡରେ ବଡ଼ବଡ଼ ବାଳ ରଖୁଛନ୍ତି । ତେଣୁ ଆମର ବୋଡ୍ ତ ଲେଖାହବ । ଆଉ ଗୋଟେ ଅକ୍ଷର ଯୋଡ଼ିଦେଲେ କ୍ଷତି କ'ଣ ?

ସ୍ଥାନୀୟ ବଡ଼ହାକିମ : ଠିକ୍ କଥା, ସାର୍ । ଅଧିକ ଗୋଟେ ଅକ୍ଷରକୁ କାଳେ ଅଡ଼ିଟ୍ ବାଲା ଅବ୍‌ଜେକ୍‌ସନ୍ କରିବେ ବୋଲି ଭାବୁଥିଲି । କିନ୍ତୁ ଏ ଯୁକ୍ତିରେ ଅଡ଼ିଟ୍ ବି ଚୁପ୍ ରହିଯିବ ।

ଅନ୍ୟଜଣେ ବିଡ଼ିଓ : ଏଥିରେ ଆହୁରି ବି ଗୋଟେ ଭଲ ପଏଣ୍ଟ ଅଛି, ସାର୍ ।

ବଡ଼ହାକିମ : ସେ ପଏଣ୍ଟଟା କ'ଣ ?

ବିଡ଼ିଓ : ମହାଭାରତ କାଳରୁ ଆଜି ପର୍ଯ୍ୟନ୍ତ ଶିଖଣ୍ଡୀମାନଙ୍କର ଗୋଷ୍ଠୀ, ଚାକରୀ, ବ୍ୟବସାୟ କି ସେହିପରି ଅନ୍ୟାନ୍ୟ

କାର୍ଯ୍ୟପାଇଁ କେଉଁ ସମ୍ପ୍ରଦାୟରେ ଯିବେ ତାହା ଠିକ୍ ହୋଇପାରିଲା ନାହିଁ । ବନ୍ୟାରେ ସେମାନେ ବି ତ କ୍ଷତିଗ୍ରସ୍ତ ହୋଇପାରନ୍ତି । ଆମେ ସେମାନଙ୍କୁ ଯେଉଁ ପର୍ଯ୍ୟାୟରେ ଚାହିଁବା, ସେଥିରେ ନେଇପାରିବା ।

ବଡ଼ହାକିମ : ଖୁବ୍ ଭଲକଥା । ସେମାନଙ୍କର ସମସ୍ୟାବି ସମାଧାନ ହୋଇଯିବ । କିନ୍ତୁ ମନେରଖ, ସେମାନଙ୍କୁ କେବେହେଲେ ପୁରୁଷ ପର୍ଯ୍ୟାୟରେ ନେବ ନାହିଁ । ସବୁବେଳେ ନାରୀ ପର୍ଯ୍ୟାୟରେ ନେବ ।

ସ୍ଥାନୀୟ ବଡ଼ହାକିମ : ଯଦି ତାଙ୍କୁ ପୁରୁଷ ପର୍ଯ୍ୟାୟରେ ନେଇଯାଅ, ତେବେ ସେମାନେ ସାଙ୍ଗେସାଙ୍ଗେ ଧାରଣା, ରାସ୍ତାରୋକ ବା ସେମିତି ଗୋଟେ କିଛି କରିବସିବେ ।

ଅନ୍ୟ ବିଡ଼ିଓ : ସେମାନଙ୍କୁ ନାରୀ ପର୍ଯ୍ୟାୟରେ ନେଲେ, ନାରୀମାନେ ରାଗିପାରନ୍ତି । ଶୀଖଣ୍ଡୀମାନଙ୍କର ପୁରୁଷମାନଙ୍କ ଉପରେ ଅଧିକାରକୁ, ନାରୀମାନେ ତ ମୂଳରୁ objection କରୁଛନ୍ତି । ଏବେ ଆମେ ତାଙ୍କୁ ନାରୀ ପର୍ଯ୍ୟାୟରେ ନେଲେ, ଏଟା ଗୋଟେ ପ୍ରିସିଡ୍ରେଣ୍ଟକେସ୍ ହୋଇଯିବ । ନାରୀମାନଙ୍କର ରିଜର୍ଭେସନ ରୋଷ୍ଟର ଆଫେକ୍ଟେଡ୍ ହେବ । ଆଉ ହ୍ୟୁମାନ ରାଇଟ୍ସ୍ ବାଲା ଆମକୁ ନାରୀ ନିର୍ଯ୍ୟାତନାକୁ ପ୍ରୋତ୍ସାହିତ କଲେବୋଲି ଧରିବେ ।

ବଡ଼ହାକିମ : ହଁ । ସେବି ଠିକ୍ କଥା । ତେବେ ପରିସ୍ଥିତିକୁ ଚାହିଁ, ତୁମେମାନେ ଏ ସମସ୍ୟାର ସ୍ଥାନୀୟ ସମାଧାନ କରିଦେବ, ହେଲା ?

ସ୍ଥାନୀୟ ବଡ଼ହାକିମ : ହଁ ସାର୍ ! ନୋଟେଡ୍ ସାର୍ ।

ବଡ଼ହାକିମ : ଆମେ କେଉଁ ବିଷୟରେ ଆଲୋଚନା କରୁଥିଲେ ?

ସ୍ଥାନୀୟ ବଡ଼ହାକିମ : ରୋଷେଇ ବିଷୟରେ, ସାର୍ ।

ବଡ଼ହାକିମ : ହଁ, ସେଇ ରୋଷେଇ କଥା । ମନେରଖ । ରୋଷେଇପାଇଁ ସବୁ ବ୍ୟବସ୍ଥା କରି ରଖିଥିବ, ଚାଉଳ, ଡ଼ାଲି, ପନିପରିବା, ହାଣ୍ଡି, କଡ଼େଇ, ତେଲ, ମସଲା ଇତ୍ୟାଦି, ଇତ୍ୟାଦି । ମନେକରି ପିଇବାପାଣି, ଭଲ ରାନ୍ଧୁଣୀଆ, ଏମିତିକି କୌଣସି

କଥାରେ ଯେମିତି ଅସୁବିଧା ନହୁଏ । ସବୁବେଳେ ଦଳିତମାନଙ୍କ କଥା ଆଗେ ବୁଝିବ । ରହିବା, ଖାଇବାରେ ମଧ୍ୟ ସେମାନଙ୍କ ପ୍ରତି ଯେପରି ସ୍ୱତନ୍ତ୍ର ଦୃଷ୍ଟି ଦିଆଯାଏ ।

ଜଣେ ବିଡ଼ିଓ : ସେ ବ୍ୟବସ୍ଥା ହୋଇଯିବ, ସାର୍ । ମୋ ଏରିଆରେ ଦଶଟା କି ବାରଟା ଟେଣ୍ଟ ହାଉସ୍ ଅଛି, ସେମାନଙ୍କର ଯେତେ ଦରି, ଗାଲିଚା, ଆସନ, ଗିଲାସ, ମଗ୍, କଡ଼ା, ଡ଼େକଚୀ, ବାଲ୍ଟି ଅଛି, ମୁଁ ସେସବୁକୁ ବର୍ତ୍ତମାନ ରିଜର୍ଭ କରିନେବି ।

ଅନ୍ୟ ଜଣେ ବିଡ଼ିଓ : ସେ ଗୁଡ଼ାକ କ'ଣ ହେବ ?

ଜଣେ ବିଡ଼ିଓ : ରାଜ୍ୟମୁଖ୍ୟ ରିଲିଫ୍ କେନ୍ଦ୍ର ତଦାରଖ କରିବାକୁ ଆସିଲା ଦିନ, ଖାଇବାବେଳେ ଦଳିତମାନଙ୍କୁ ଆସନରେ ବସାଇ ଦେବି । ଅନ୍ୟାମନଙ୍କୁ ତଳେ ବସାଇବି । ଦଳିତମାନଙ୍କୁ ପ୍ଲେଟ୍‌ରେ ଖାଇବାକୁ ଦେବି । ଅନ୍ୟମାନଙ୍କୁ ପତ୍ର ଦେବି ।

ସ୍ଥାନୀୟ ବଡ଼ହାକିମ : ହଁ । ସେମାନେ ଯେ ହଜାର ହଜାର ବର୍ଷଧରି ଦଳିତ ଅବସ୍ଥାରେ ଥିଲେ ଏବଂ ସରକାର ତାହା ହୃଦୟଙ୍ଗମକରି ତାଙ୍କୁ ଉଚିତ ମର୍ଯ୍ୟାଦା ଦେଉଛନ୍ତି, ଏକଥା କେବଳ ସେମାନେ କାହିଁକି, ସାରା ବିଶ୍ୱ ସେଦିନ ଜାଣିବାକୁ ପାଇବ ।

ଅନ୍ୟଜଣେ ବିଡ଼ିଓ : ସାର୍ ! ଖାଇବାର ବ୍ୟବସ୍ଥା ଭଲରେ କରିବାକୁ ହେଲେ, ଭଲ ଚାଉଳତ ରାନ୍ଧିବାକୁ ପଡ଼ିବ ?

ଅନ୍ୟ ବିଡ଼ିଓ : ଏତିକି ବୁଝିପାରୁନ ? ଆରେ ଚାଉଳ ଭଲ ନହେଲେ, ଭାତ ଭଲ ହେବନି । ଭାତ ଭଲ ନହେଲେ, ଭଲ ଫଟୋ ଉଠିବନି । ଭଲ ଫଟୋ ନଉଠିଲେ, ମିଡ଼ିଆ ଆଉ ହ୍ୟୁମାନ୍ ରାଇଟ୍‌ସ୍‌ବାଲା ତାକୁ କଦର୍ଥ କରିବେ । କହିବେ, ଯେଉଁ ଖାଦ୍ୟ ଦିଆଯାଉଥିଲା, ତାକୁ ମଣିଷ କଣ, ଘୁଷୁରୀ ବି ଖାଇବେନି । ସରକାର ଲୋକଙ୍କର ଦୁର୍ଦ୍ଦିନର ଫାଇଦା ଉଠାଇ ତାଙ୍କ ଉପରେ ଅମାନବୀ ବ୍ୟବହାର କରିଛି ।

ସ୍ଥାନୀୟ ବଡ଼ହାକିମ : ତେଣୁ ଭଲ ଚାଉଳରାନ୍ଧି ଦେଇଦେଲେ ଗଲା ।

ଜଣେ ବିଡ଼ିଓ : ସେଥିରେ ବି ଭବିଷ୍ୟତରେ ଅସୁବିଧା ହେବାର ସମ୍ଭାବନା ଅଛି, ସାର୍ ।

ବଡ଼ ହାକିମ : କି ଅସୁବିଧା ?

ଜଣେ ବିଡ଼ିଓ : ସାର୍ ! ଓଲଡ୍ ଏଜ୍ ପେନ୍‌ସନର୍, ବିଧବା ଭତ୍ତା ପାଉଥିବା ସ୍ତ୍ରୀଲୋକମାନଙ୍କୁ ଆଉ ଦାରିଦ୍ର୍ୟର ସୀମାରେଖାତଳେ ଥିବା ଲୋକମାନଙ୍କୁ BPL ଚାଉଳ ଦେଉଛୁ । ସେମାନେ ସବୁଦିନ ସେ ଚାଉଳ ଖାଉଛନ୍ତି । ବନ୍ୟାଘେରରେ ତାଙ୍କୁ କେତେଦିନ ରହିବାକୁ ପଡ଼ିବ, କିଏ ଜାଣେ ? ଯଦି ଏ ବନ୍ୟାର ପ୍ରକୋପ ବଢ଼ିଲା, ଆଉ ଆମ ଆଶ୍ରୟସ୍ଥଳ ମେସ୍ ବେଶୀଦିନ ଚାଲିଲା, ତେବେ ଭଲ ଚାଉଳ ଖାଇ ଖାଇ ସେମାନେ ଭବିଷ୍ୟତରେ ଆଉ BPL ଚାଉଳ ଖାଇ ପାରିବେନି । ଫଳରେ ଧର୍ମଘଟ, ଧାରଣା, ରାସ୍ତାରୋକୋ ପ୍ରଭୃତି ଅସୁନ୍ଦର ପରିସ୍ଥିତି ସବୁ ସୃଷ୍ଟି ହେବ ।

ସ୍ଥାନୀୟ ବଡ଼ହାକିମ : ଆମେ ଭଲ ଚାଉଳ ଦେଉଥିଲେ ବୋଲି କହିବା କାହିଁକି ?

ବିଡ଼ିଓ : ସାର୍ ! ଆମ ଚାଉଳରୁ ହୋଇଥିବା ଭାତର ଫଟୋ ପରା ମିଡିଆ ପାଖରେ ଥିବ ? ସିଏ କ'ଣ ଆମକୁ ଛାଡ଼ିବେ ?

ବଡ଼ହାକିମ : ଯେ ବି ଚିନ୍ତାକରିବାର ଏକ ବିଷୟ । ତେବେ ପରିସ୍ଥିତିକୁ ଦେଖି ତାକୁ ସାମନା କରିବାକୁ ପଡ଼ିବ ।

ବିଡ଼ିଓ : ତାହେଲେ ସାର୍, ପୂଜାରୀ ଯୋଗାଡ଼ କରିବାକୁ ବି ପଡ଼ିବ ? ମୁଁ ଟିକେ ଆମ ବଡ଼ବାବୁଙ୍କୁ କହିଦିଏଁ । ସେ ଶୀଘ୍ର ସେ ବ୍ୟବସ୍ଥା କରନ୍ତୁ ।

ବଡ଼ବାବୁ : ମୁଁ ଭିତରକୁ ଆସିପାରେ କି ସାର୍ !

ବଡ଼ହାକିମ : କିଏ ?

ବିଡ଼ିଓ : ସିଏ ମୋ ଅଫିସର ବଡ଼ବାବୁ । ଆଚ୍ଛା ବଡ଼ବାବୁ ଆପଣ ପୂଜାରୀ କଥା ଟିକେ ଯାଇ ବୁଝାବୁଝି କରନ୍ତୁ ।

ବଡ଼ବାବୁ : ମୁଁ ସେକଥା କହିଥିଲି ସାର୍ । ସେଥିରେ ଟିକେ ଅସୁବିଧା ହେଉଚି । ସେଇ ବିଷୟରେ ଜଣେଇବାକୁ ଆସିଛି ।

ସ୍ଥାନୀୟ ବଡ଼ହାକିମ : କ'ଣ ଅସୁବିଧା ?

ବଡ଼ବାବୁ : ଆଜ୍ଞା ଗାଁ ଗାଁ ବୁଲି ପୂଜାରୀ ଖୋଜେଇଲି, ଆମ ଇଆଡ଼େ ବହୁତ ଭଲ ପୂଜାରୀ ଅଛନ୍ତି । ହେଲେ ସେମାନେ ଖାଲି ବ୍ରାହ୍ମଣ

— ମାନେ ଜେନେରାଲ କାଷ୍ଟର ଲୋକ । ସେଥିରେ ଅନ୍ୟ କାଷ୍ଟ ବା ଟ୍ରାଇବ୍ ମିଳୁନାହାଁନ୍ତି । ତେଣୁ ରିଜର୍ଭେସନ୍ ରୋଷ୍ଟର ପାଇଁ ଭାରି ଅସୁବିଧା ହେଉଛି ।

ସ୍ଥାନୀୟ ବଡ଼ହାକିମ : ଆହେ ବଡ଼ବାବୁ ! ତୁମେ ରୋଷେଇ କାର୍ଯ୍ୟପାଇଁ କିଛି SC, ST ଯୋଗାଡ଼ କର । ସମସ୍ତେ ଭଲ ରୋଷେଇଆ ନହେଲେ ବି ଚଳିବ ।

ବଡ଼ବାବୁ : ସେକଥା ବି ଚେଷ୍ଟା କରିଥିଲି ସାର୍ । SC, ST ବାଲା କହୁଛନ୍ତି, ଯେ ଅସମ୍ଭବ କଥା । ଆମେ ରୋଷେଇ ଆଦୌ କରିବାକୁ ଯିବୁନାହିଁ କି ପାପ ମୁଣ୍ଡେଇ ଫେରିବୁ ନାହିଁ । ଦେଶସାରା ପାପ ଘୋଟି ଯିବାରୁ ତ ବର୍ଷେ ବାତ୍ୟା, ବର୍ଷେ ମରୁଡ଼ି, ତା ପରବର୍ଷ ବଢି ଆଉ ବାଢ଼ି । ପାଳିକରି ଆସୁଛନ୍ତି । ସେଥିକି ଆମେ ରାନ୍ଧିବୁ ଆଉ ପେଟ ବିକଳରେ ଅନ୍ୟମାନେ ଯଦି ତାକୁ ଖାଇବେ ତେବେ ଆମେ ସବୁ ନର୍କକୁ ଯିବୁ । ଆମେ ମରିବୁ ପଛେ ରାନ୍ଧିବାକୁ ଯିବୁ ନାହିଁ ।

ସ୍ଥାନୀୟ ବଡ଼ହାକିମ : ପରିସ୍ଥିତି ଯଦି ଏମିତି ତେବେ ସବୁ ରୋଷେଇ କରିବା ଲୋକ G.C. ହୁଅନ୍ତୁ ସାର୍ ।

ବଡ଼ହାକିମ : (ଗମ୍ଭୀରହୋଇ) ରିଜର୍ଭେସନ ରୋଷ୍ଟର ପଏଣ୍ଟକୁ ଏପଟ ସେପଟ କରିବାକୁ ମୋର ପାଓ୍ୱାର ନାହିଁ । ସେମିତି କଲେ ମୁଁ କେସ୍‌ରେ ପଡିଯିବି ।

ସ୍ଥାନୀୟ ବଡ଼ହାକିମ : ବଡ଼ବାବୁ । ତୁମେ କଥାଟା ତୁମର ସ୍ଥାନୀୟ ଭାବରେ ତୁଲେଇ ନିଅ । ସେ ସବୁକୁ ଆମ ନଜରକୁ ଆଣନି ।

ବଡ଼ବାବୁ : ଗୋଟିଏ କଥା ହେଇଥିଲେ, ମୁଁ ଚଳେଇ ନେଇ ଥାଆନ୍ତି ସାର୍ ।

ବିଡ଼ିଓ : ତେବେ ପୁଣି କି ସମସ୍ୟା ଅଛି ?

ବଡ଼ବାବୁ : ସେତ ବୃହତ୍ ସମସ୍ୟା ।

ବଡ଼ହାକିମ : ଆରେ କି ସମସ୍ୟା ଆଗ କୁହ ।

ବଡ଼ବାବୁ : ରୋଷେଇ ପରେ ଯେଉଁ ସଫାସଫି କାମ । ସେଇଟା ବର୍ତ୍ତମାନ ଖୁବ ବଡ଼ ସମସ୍ୟା ହେଇ ଦେଖାଦେଲାଣି । G.C.ମାନେ କହୁଛନ୍ତି, ସବୁଦିନେ ଆମେ ଖାଉଁ, ଅନ୍ୟମାନେ

ବାସନମାଜନ୍ତି । ଏବେ ଆମେ କେମିତି ଆମ ବାସନ ମାଜିବୁ । ସେ କାମର Reservation Roster କଥା ସେମାନେ ଆଦୌ ମାନିବାକୁ ରାଜିନୁହନ୍ତି ।

ବିଡ଼ିଓ : ସେକଥା ତୁମେ SC ଆଉ STଙ୍କ ସାଙ୍ଗରେ କଥାବାର୍ତ୍ତା ହଇନି ?

ବଡ଼ବାବୁ : ସେକଥା କ'ଣ ମୁଁ ବାକି ରଖିଛି କି ? ହେଲେ ମୋକଥା ଶୁଣିବୁଢା ବୁଢା ଲୋକମାନେ ସାଙ୍ଗେସାଙ୍ଗେ ରାଜି ହୋଇଗଲେ । କିନ୍ତୁ ଆଜି କାଲିକା ଟୋକାମାନେ ଅଡ଼ି ବସିଲେ, କହୁଛନ୍ତି କ'ଣ ନା ସେ କଥା କେମିତି ହେବ । Reservation Roster point ଏପଟ ସେପଟ ହୋଇ ପାରିବନି । ଟିକିଏ ପାନରୁ ଚୁନ ଖସିଲେ ଆମେ ଆଇନ୍‌ର ଆଶ୍ରୟ ନେବୁ । Human Right Commissionଙ୍କ ପାଖରେ ଫେରାଦ୍ ହେବୁ । ପବ୍ଲିକ୍ ଲିଟିଗେସନ୍‌ରେ କଥାଟାକୁ ବହୁତ ଉପରକୁ ନବୁ । ଦେଖିବ ତୁମେ କେମିତି ସରକାରୀ ଧନର ଅପବ୍ୟବହାର କରି Reservation Rosterକୁ ବ୍ୟତିକ୍ରମ କରେଇ ଆମ ହାତରେ ବାସନ ମଜେଇବ । ଅଇଁଠା ସଫା କରେଇବ । ଆମେ ଏସବୁ କଥା ମିଡ଼ିଆକୁ କହିବୁ । ପ୍ରେସ୍ କନ୍‌ଫରେନ୍ସ କରିବୁ । ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଆମ ଅସହାୟତାର ସୁଯୋଗ ନେଇ ଆମ ଉପରେ ଅତ୍ୟାଚାର କରାଯାଉଛି ବୋଲି ଡ଼ାକିଡ଼ାକି ସମସ୍ତଙ୍କୁ କହିବୁ ।

ସ୍ଥାନୀୟ ବଡ଼ହାକିମ : ହଉ, ହଉ ବଡ଼ବାବୁ ! ତୁମେ ଆଉ କଥାଟାକୁ ବଢାନା । ଭିତରେ ଭିତରେ କ'ଣ କେମିତି କରି ସେ ଟୋକାମାନଙ୍କ ମୁହଁ ବନ୍ଦକରି କାମଟା ଚଳେଇ ନିଅ । ସେଇଥିପାଇଁ ତ ତୁମେ ନିଜ ଗାଁ ବ୍ଲକ୍‌ରେ ଚାକିରୀ ଆରମ୍ଭରୁ ରହିଛ । ନିଜର ପ୍ରଭାବ ପକେଇ ଯେମିତି ବଦଳି କ୍ୟାନ୍‌ସେଲ୍ କରୁଥିଲ, ସେମିତି ନିଜର ପ୍ରଭାବ ପକେଇ ସରକାରୀ କାମ ସୁରୁଖୁରୁରେ ଶେଷକର । ଆଉ ଅଧିକ ଭାଷଣ ଦିଅନାହିଁ ।

ବଡ଼ହାକିମ : ହଁ, ଆମ ଆଲୋଚନା କେଉଁଠୁ ବନ୍ଦଥିଲା ? ଏଇ ପୂଜାରୀ

କଥାରୁ ତ ?

ସ୍ଥାନୀୟ ବଡ଼ହାକିମ : ହଁ ସାର୍ !

ବଡ଼ହାକିମ : ଏହିପରି ଏହିପରି ରିଲିଫ୍ କାର୍ଯ୍ୟ ତିନିଦିନ ଚାଲିବ ।

ବିଡ଼ିଓମାନେ : (ସମସ୍ୱରରେ) ହଁ, ସାର୍ !

ବଡ଼ହକିମ : ତିନିଦିନ ପରେ ଆବଶ୍ୟକ ପଡ଼ିଲେ, ଏହା ଆଉ ତିନିଦିନ ପାଇଁ ବଢେଇବାକୁ ପଡ଼ିବ ।

ବିଡ଼ିଓମାନେ : (ସମସ୍ୱରରେ) ହଁ, ସାର୍ ।

ବଡ଼ହାକିମ : ମୋଟ ଉପରେ ଯେପରି ଦଶଦିନ ପର୍ଯ୍ୟନ୍ତ ଚାଲେ, ସେଥିପାଇଁ ସବୁ ବ୍ୟବସ୍ଥା କରି ରଖିଛ କି ନାହିଁ ?

ସ୍ଥାନୀୟ ବଡ଼ହାକିମ : ହଁ, ସାର୍ ! ସେ ସବୁ ବ୍ୟବସ୍ଥା କରାଯାଇଛି ।

ବଡ଼ ହାକିମ : ବନ୍ୟା ଅଧିକ ହେଲେ, ରିଲିଫ୍ କାର୍ଯ୍ୟ ପାଇଁ ଫଉଜୀମାନେ ଆସିପାରନ୍ତି । ତାଙ୍କର ରହିବା ପାଇଁ ସବୁ ବ୍ୟବସ୍ଥା କରିବ ।

ସ୍ଥାନୀୟ ବଡ଼ହାକିମ : ହଁ ସାର !

ବଡ଼ ହାକିମ : ପାଣି କମିବାକୁ ଆରମ୍ଭ କଲେ ତାର୍ପୋଲିନ୍, ପଲିଥିନ୍, ଚୁଡ଼ା, ଗୁଡ଼ ଚାଉଳ ଗାଁମାନଙ୍କରେ ବଣ୍ଟାହେବା ବ୍ୟବସ୍ଥା ଠିକ୍ ଠିକ୍ ଅଛି ତ ?

ସ୍ଥାନୀୟ ବଡ଼ହାକିମ : ଚାଉଳ ଟିକେ କମ ଅଛି, ଚୁଡ଼ା ଆସି ପହଞ୍ଚିନାହିଁ । ଗୁଡ଼ ଟ୍ରକ ଆଜି ସନ୍ଧ୍ୟାସୁଦ୍ଧା ଆସିଯାଇ ପାରେ । ତାର୍ପୋଲିନ୍ ଆଉ ପଲିଥିନ୍ ୱାଗନ୍ ପହଞ୍ଚୁ ପହଞ୍ଚୁ କେତେଦିନ ଯିବ କେଜାଣି ? ସେଥିକି ବର୍ଷାଟାବି ଖୁବ୍ ଜୋରରେ ମାଡ଼ିଆସିଲାପରି ଲାଗୁଛି ।

ବଡ଼ବାବୁ : Fax ଆସିଛି, ସାର୍ ।

ବଡ଼ ହାକିମ : ଦେଖି ? (ପଢି ଗମ୍ଭୀର ହୋଇଗଲେ) ବନ୍ୟାଜଳ ଖୁବ୍ ଜୋରରେ ଆସୁଛି ।

ସ୍ଥାନୀୟ ବଡ଼ହାକିମ : ବି.ଡ଼ି.ଓ ମାନେ ନିଜ ନିଜ ଅଞ୍ଚଳକୁ ଚାଲିଯାଆନ୍ତୁ, ସାର୍ !

ବିଡ଼ିଓ : ବନ୍ୟା ଆସିଲେ ଅମେ ଚାଲିଯିବୁ, ସାର୍ !

ବଡ଼ହାକିମ : ଆରେ ବନ୍ୟାଜଳ ଆସି ପହଞ୍ଚିବା ପର୍ଯ୍ୟନ୍ତ ତୁମେମାନେ କ'ଣ ଏଇଠିଥିବ ?

ଜଣେ ବିଡ଼ିଓ : ହଁ, ସାର୍ ! ବନ୍ୟାଜଳ ଆସିଲେ, ଆମେ ସମସ୍ତେ ପାୱାରବୋଟ୍‌ରେ ବସି ସେଇ ବନ୍ୟା ସାଙ୍ଗରେ ଯାଇ ନିଜ ନିଜର ଅଞ୍ଚଳରେ ପହଞ୍ଚିଯିବୁ । କାରଣ ଏବେ ଯେମିତି ବର୍ଷା ହେଉଛି, ଜିପ୍‌ରେ ଯିବା ସମ୍ଭବ ହେବନାହିଁ ।

ସ୍ଥାନୀୟ ବଡ଼ହାକିମ : (ବଡ଼ ହାକିମଙ୍କ ଉଦ୍ଦେଶ୍ୟରେ) ଏମାନେ ଚାହେଁଲେ ସେୟା କରନ୍ତୁ, ସାର୍ !

ବଡ଼ହାକିମ : ଆଚ୍ଛା, ଆଚ୍ଛା । ତେବେ ମୁଁ ଚାଲିଲି । ଆଜିର ରିଭିୟୁ ବିଷୟରେ ପୁଙ୍ଖାନୁପୁଙ୍ଖ ବିବରଣୀ ରାଜ୍ୟମୁଖ୍ୟଙ୍କୁ ଜଣାଇବାକୁ ପଡ଼ିବ ।

ଜଣେ ବିଡ଼ିଓ : (ତରତର ହୋଇ) ସାର୍ ! ଭିଡ଼ିଓ ଫଟୋଗ୍ରାଫର ଯୋଗାଡ଼କରିବାକୁ ପଠେଇଥିଲି । ଆମ ଏ ଅଞ୍ଚଳରେ ଯେତେ ଫଟୋଗ୍ରାଫ୍‌ର ଅଛନ୍ତି, ସେମାନେ ସମସ୍ତେ ଜେନେରାଲ କାଷ୍ଟର, ସାର୍ ! ତେଣୁ ସେମାନଙ୍କ ଭିତରେ ରିଜର୍ଭେସନ ଖୋଜିଲେ ଚଳିବନି ।

ସ୍ଥାନୀୟ ବଡ଼ ହାକିମ : ଆରେ ସେ ସବୁ କଥା ସାହେବଙ୍କୁ କହି କାହିଁକି ଅଯଥାରେ ଭାରାକ୍ରାନ୍ତ କରୁଛ ? ତୁମକୁ ତ କୁହାଗଲା, ତୁମ ଲେଭଲ୍‌ରେ ସେ ସବୁକୁ ଚଳାଇନେବାକୁ । ଜେନେରାଲ୍ କାଷ୍ଟର ଲୋକଙ୍କୁ କାମରେ ଲଗାଇ ରିଜର୍ଭେସନ୍ ଅନୁସାରେ କାଗଜପତ୍ର କରି ରଖିଦିଅ ।

ବଡ଼ହାକିମ : ହଁ, ହଁ । କିଛି ଗୋଟେ ବ୍ୟବସ୍ଥା କରି ପରିସ୍ଥିତି ସମ୍ଭାଳି ନିଅ । ମୁଁ ଆସୁଛି (ଚାଲିଗଲେ । ଅନ୍ୟମାନେ ସମ୍ମାନ ଜଣାଇଲେ....)

ଜଣେ ବିଡ଼ିଓ : ସବୁ କଥା ଆମ ବଡ଼ବାବୁ କହୁଛନ୍ତି ଯେ, ହେଲେ ସାର୍ ! ପରେ ଯଦି କିଏ କେଉଁଠି ଅବ୍‌ଜେକ୍‌ସନ୍ କରେ, ତେବେ ସି.ବି.ଆଇ. ଇନ୍‌କ୍ୱାରୀ ନହେଲେ ବି ଭିଜିଲାନ୍ସ ଇନ୍‌କ୍ୱାରୀ ତ ନିଶ୍ଚିତ ହେବ । ତେଣୁ ଅଯଥାରେ ମୁଁ ବଳି ପଡ଼ିବି ।

ସ୍ଥାନୀୟ ବଡ଼ହାକିମ : ଓହୋଃ । କାହିଁକି ବେକାରଟାରେ ବ୍ୟସ୍ତ ହେଉଛ, କହିଲ ? ସେସବୁ କଥା ପରେ ବୁଝିବା । ଆଗ ବନ୍ୟା ଆସି ଭଲରେ ଭଲରେ ଚାଲିଯାଉ । ଆଚ୍ଛା ତୁମର ସବୁ ଚାଉଳ ଆଉ ଚୁଡ଼ାର

ହିସାବ ମତେ କହିଲ ?

ହରିଦାସପୁର ବିଡ଼ିଓ : ମୋର ସବୁ ଚାଉଳ, ଚୁଡ଼ା ଆଉ ଗୁଡ଼ ତ ଏଇଠାରୁ ଯିବ ବୋଲି ଆପଣ ଅର୍ଡ଼ର କରିଛନ୍ତି ।

ସ୍ଥାନୀୟ ବଡ଼ହାକିମ : ଖାଲି ତୁମର ନୁହେଁ ହୋ । ସମସ୍ତଙ୍କର ଏଇଠାରୁ ଯିବ । ତେବେ ଯାହାକୁ ଯାହା ଅର୍ଡ଼ର କରାଯାଇଛି, ସେସବୁ ଜିନିଷ ଠିକ୍‌ଠିକ୍ କରି ରଖାଯାଇଛି କି ନା କେହି ଦେଖିଲଣି ? ନା ଖାଲି ଚୁପ୍‌ଚାପ୍ ଅପେକ୍ଷା କରିବସିଛି ?

ହରିଦାସପୁର ବିଡ଼ିଓ : ମୋର ଚାଉଳ ଦାମ ବାବୁ ପଠାଇବେ । ସେତ ବହୁତ ଭଲଲୋକ ପରି ଜଣାପଡୁଛନ୍ତି, କହିଛନ୍ତି ଠିକ୍ ସମୟରେ ଜିନିଷ ଯାଇ ପହଞ୍ଚିଯିବ ।

ଲକ୍ଷ୍ମଣପୁର ବିଡ଼ିଓ : ମୋର ତ ଚାଉଳ ତାଙ୍କରି ପାଖରୁ ଯିବ ।

ଅନ୍ୟ ବିଡ଼ିଓମାନେ : ଆମର ବି ତ ସବୁ ତାଙ୍କରିଠାରୁ ଯିବ ବୋଧହୁଏ । ଚାଲୁନା ଥରେ ତାଙ୍କ ସହିତ କଥାବାର୍ତ୍ତା କରିନେବା ।

ସ୍ଥାନୀୟ ବଡ଼ହାକିମ : ହଁ, ହଁ । ସେୟାକର । ଠିକ୍ ହେବ । ଦାମବାବୁ ବୋଧହୁଏ ବାହାରେ ଅପେକ୍ଷା କରିଛନ୍ତି ।

ଚୋରମୁହାଁ ବିଡ଼ିଓ : ସାର୍ ! ମୋ ବ୍ଲକପାଇଁ ଚୁଡ଼ାଗୁଡ଼ ବୋଧହୁଏ ସେଇତ ଦେବେ ?

ସ୍ଥାନୀୟ ବଡ଼ହାକିମ : ହଁ ହେ । ଖାଲି ତୁମର ନୁହେଁ; ସମସ୍ତଙ୍କପାଇଁ ଚାଉଳ, ଚୁଡ଼ା, ଗୁଡ଼ ଦାମବାବୁ ଦେବେ । ଗୋଖାଦ୍ୟ ଦେବେ ସୁଦାମ ବାବୁ । ଦିଆସିଲି, ଲୁଣ ମହମବତୀ ଦେବେ ସୁବଳାବାବୁ, ତାଙ୍କ ସାଙ୍ଗରେ କଥାବାର୍ତ୍ତା କରି ମୁଁ ଅଡ଼ର ଇସୁ କରିଦେଇଛି । କପି ତ ସବୁ ତୁମକୁ ଦିଆଯାଇଛି । ଡ଼ାକ ଦେଖୁନା କି ? କ'ଣ କିହୋ ଚୋରମୁହାଁ ବିଡ଼ିଓ ସାହେବ ?

ଚୋରମୁହାଁ ବିଡ଼ିଓ : ମୁଁ ସାର୍ ପ୍ରତିଦିନ ଡ଼ାକ ଦେଖେଁ ଯେ ? ହେଲେ ଗତ ଦୁଇଦିନର ଡ଼ାକ ଦେଖିପାରିନାହିଁ । ଆମ ବଡ଼ବାବୁ ସେସବୁ ଦେଖାଦେଖିକରି ଠିକ୍‌ଠାକ୍ କରିଥିବେ ।

ଲକ୍ଷ୍ମଣପୁର ବିଡ଼ିଓ : ମୁଁ କିନ୍ତୁ ତ ସାର ସବୁଡ଼ାକ ଦେଖିଛି ? କିନ୍ତୁ ଆପଣଙ୍କ ଅର୍ଡ଼ରର ଏଇ କପି ଗୁଡ଼ାକ ପାଇ ନାହିଁ ।

ସ୍ଥାନୀୟ ବଡ଼ହାକିମ : ଶୁଣୁଛ ତ ସମସ୍ତେ ଆମ ଲକ୍ଷ୍ମଣପୁର ବିଡ଼ିଓଙ୍କ କଥା ? କିହୋ ତୁମେ ବୋଧହୁଏ ତିନିଦିନ ହେବ ଏଠି ବୁଲୁଛବୋଲି ମୁଁ ଶୁଣିଛି । ଆଉ ଡ଼ାକ ଦେଖୁଛ ବୋଲି କେମିତି କହୁଛ ?

ଲକ୍ଷ୍ମଣପୁର ବିଡ଼ିଓ : (ଲାଜରାହେଇ) ବଡ଼ବାବୁ ସବୁ ଡ଼ାକ ନେଇ ଆସିଛନ୍ତି ଯେ, ସେଥିରେ କିନ୍ତୁ ଏ ଚିଠିସବୁ ନାହିଁ ।

ସ୍ଥାନୀୟ ବଡ଼ହାକିମ : ଆରେ ସିଏ ପରା ଦୁଇଦିନ ହେବ ଆସିଥିବେ ? ନା'କଣ କହୁଛହେ ଚୋରମୁହାଁ ବିଡ଼ିଓ ? ତୁମେ ଆସି ଏଠି କେତେଦିନ ହେବ ଅଛ ?

ଚୋରମୁହାଁ ବିଡ଼ିଓ : ନା, ସାର୍ ! ମୁଁ ମାତ୍ର କାଲି ଆସିଛି । ଏଯେଉଁ ବନ୍ୟାହାଉଳି ଲାଗିଛି, ଏଥିରେ କ'ଣ ହେଡ୍‌କ୍ୱାଟର ଛାଡ଼ି ହେଉଛି କି ସାର୍ । ସେଥିକି ଆମ ଏମ୍.ଏଲ୍.ଏ. ତ ଅପୋଜିସନ୍ ବାଲା । ପାନରୁ ଟିକେ ଚୂନ ଖସିଗଲେ, ସିଏ ଖାଲି ଟେଲିଗ୍ରାମ୍ କରିବେ ।

ସ୍ଥାନୀୟ ବଡ଼ହାକିମ : ଆହେ ସେଥିରେତ ତୁମର ଲାଭ । ବିରୋଧିଦଳବାଲା ତୁମ ନାମରେ ଯେତେ ଟେଲିଗ୍ରାମ କରିବେ, ତୁମେ ସେତେ ସରକାରୀ ଦଳର ଲୋକ ବୋଲି ପ୍ରମାଣିତ ହେବ ।

ହରିଦାସପୁର ବିଡ଼ିଓ : ହଁ ପରା ସାର୍ ! ଆମ ଚୋରମୁହାଁ ବିଡ଼ିଓ ସାହେବ ସେଥିରେ expert. MLA ଅପୋଜିସନ୍ ପାର୍ଟିର ହେଲେବି ଯାଙ୍କର ତାଙ୍କର ଭରି ଭଲ । ମଝିରେ ମଝିରେ ଲୁଚିଲୁଚି ତାଙ୍କୁ ଦେଖାକରି କହୁଛନ୍ତି, ଜିଲ୍ଲାମନ୍ତ୍ରୀ ଆପଣଙ୍କର କିଛି କାମ ନକରିବାକୁ କହିଛନ୍ତି । ଏପରିକି ଆପଣଙ୍କୁ ଦେଖା ନକରିବାକୁ ମଧ ମତେ Instruction ଦେଇଛନ୍ତି । ହେଲେ ମୁଁ ସେ ସବୁକୁ କିଛି ମାନୁନାହିଁ । ଯେତେହେଲେ ଆପଣ ଆମ ଲୋକାଲ୍ MLA । ଅନେକ ବର୍ଷ ହେଲା ଏ ନିର୍ବାଚନମଣ୍ଡଳରୁ ଜିତିଜିତି ଆସୁଛନ୍ତି । ଆପଣଙ୍କ ଦଳ ଆସନ୍ତା ଥରତ ନିଶ୍ଚୟ କ୍ଷମତାକୁ ଆସିବ, ଆଉ ଆପଣହେବେ ପଞ୍ଚାୟତିରାଜମନ୍ତ୍ରୀ ।

ଲକ୍ଷ୍ମଣପୁର ବିଡ଼ିଓ : ପୁଣି ଜିଲ୍ଲାମନ୍ତ୍ରୀଙ୍କ ପାଖୁଯାଇ କହୁଛନ୍ତି କ'ଣ ନା, ସାର୍ ! MLAଙ୍କ ପାଖକୁ ମୁଁ କେବେ ଯାଉନାହିଁ । ସିଏ ଖାଲି ମୋ ଉପରେ ରଢ଼ଚାଉଳ ଚୋବେଇ ହେଉଛନ୍ତି । ମଝିରେ ମଝିରେ

ଫୋନ୍ କରି ଭାରି ବିରକ୍ତ ହେଉଛନ୍ତି । କହୁଛନ୍ତି, ମୋ ବିରୁଦ୍ଧରେ ପଞ୍ଚାୟତ ରାଜମନ୍ତ୍ରୀଙ୍କୁ କହି ମତେ ବଦଳି କରିଦେବେ । ତେବେ ସିଏ କାହିଁକି ମୋର ବଦଳି କରି ବାହାଦୁରୀ ନେବେ । ତା' ଆଗରୁ ଆପଣ ଯଦି ମୋ କାମରେ ଅସନ୍ତୁଷ୍ଟ ତେବେ ମତେ ଅନ୍ୟତ୍ର ବଦଳି କରିଦିଅନ୍ତୁ ।

ଚୋରମୁହାଁ ବିଡ଼ିଓ : ଆଉ ଜିଲ୍ଲାମନ୍ତ୍ରୀ ଏକଥା ଶୁଣି କହୁଛନ୍ତି, ବଦଳି ଫଦଳି କ'ଣ କିହୋ । ଆମ ସରକାର ସେ ବଦଳି ଫଦଳି ନୀତିରେ ବିଶ୍ୱାସ କରନ୍ତିନାହିଁ । ଆମେ ସରକାରୀ ଅଫିସରଙ୍କଠାରୁ କେମିତି କାମ ଆଦାୟ କରିବାକୁ ହୁଏ, ଠିକ୍ ଭାବରେ ଜାଣୁ । ଆରେ ବଦଳି କରିଦେଲେ ସେ ଅଫିସର ଯେଉଁଠିକି ଯିବ, ସେଠିତ ପୁଣି ଆମ ଲୋକ ଅଛନ୍ତି । ବିନା ଦୋଷରେ ତାଙ୍କୁ ହଇରାଣ କରିବା ତେଣୁ ବଦଳି ନକରି, ନିଜ ଅକ୍ତିଆର ଭିତରେ ସରକାରୀ ଅଫିସରମାନଙ୍କୁ ରଖି, ତାଙ୍କ ହାତରେ କାମ ଆଦାୟ କରିବା କାଇଦା ଆମକୁ ଖୁବ୍ ଭଲ ଭାବରେ ଜଣା ।

ସ୍ଥାନୀୟ ବଡ଼ହାକିମ : ତାହେଲେ, ଆମ ଚୋରମୁହାଁ ବିଡ଼ିଓ ଜଣେ ପାରିବାର ଲୋକ ।

ଚୋରମୁହାଁ ବିଡ଼ିଓ : ନା ସାର୍ । ଏମାନେ ସବୁ ମୋର ଶତ୍ରୁପକ୍ଷ ଲୋକ । ଏଇମିତି ଲଗେଇ ସଜେଇ ମୋ ବିରୁଦ୍ଧରେ କହୁଛନ୍ତି । ଏକଥା ଯଦି ଆମ MLA ଆଉ ଜିଲ୍ଲାମନ୍ତ୍ରୀ ଜାଣନ୍ତି । କଥାଟା କେତେ ଅସୁନ୍ଦର ହେବ କହିଲେ ।

ସ୍ଥାନୀୟ ବଡ଼ହାକିମ : (ହସିହସି) ଆରେ ସେମାନେ ତୁମର ସାଙ୍ଗ । ସେଥିପାଇଁ ପରିହାସ କରୁଛନ୍ତି । Don't take it to your heart. ଆଚ୍ଛା । ମୁଁ ଏଥର ଉଠେଁ ।

ଚୋରମୁହା ବିଡ଼ିଓ : ସେକଥା କେମିତି ହେବ ସାର୍ । ଏଇଠି ତ ରୋଷେଇ ହେଉଛି । Lunch କରି ଦେଇଯିବେ ।

ସ୍ଥାନୀୟ ବଡ଼ହାକିମ : ତା'ହେଲେ ମୋର ଆଜି ରିଲିଫ୍ ଏଇଠି । ଭଲଭଲ । ସମସ୍ତେ ବସି ସାଙ୍ଗ ହେଇ ପଙ୍କ୍ତିଭୋଜନ କରିବା । Relief କାର୍ଯ୍ୟ ଆରମ୍ଭ ହେବା ପୂର୍ବରୁ relief ଅନ୍ତତଃ ଗୋଟେ Pre-impres-

sion ହେବ । ଜଣକ ପରେ ଜଣେ ସମସ୍ତେ ଡ୍ରାଇନିଙ୍ଗ ହଲକୁ ଗଲେ । ପ୍ରବେଶ କଲେ ଦାମବାବୁ । (ତାଙ୍କ ସାଙ୍ଗରେ ଗୋଟିଏ ବ୍ଲକ୍ ଅଫିସର ବଡ଼ବାବୁ)

ଦାମବାବୁ : ବଡ଼ବାବୁ ! ଆପଣ ମନ ଉଣା କରିବେ ନାହିଁ । ମୋ ପ୍ରତି ଟିକେ ଶୁଭଦୃଷ୍ଟି ରଖିଥିବେ । ବିଡ଼ିଓ ବାବୁ ତ ନୂଆ । ସିଏ କ'ଣ ଏସବୁ ଜାଣିଲେଣି ? ଖାଲି ଫଁ ଫଁ ହେବେ ।

ବଡ଼ବାବୁ : ଦାମବାବୁ । ଜିନିଷ ସବୁ ଠିକ୍ ସମୟରେ ଆସିପହଞ୍ଚିବତ ?

ଦାମବାବୁ : ନିଶ୍ଚୟ ।

ବଡ଼ବାବୁ : ଜିନିଷ ଠିକ୍ ସମୟରେ ଆସି ପହଞ୍ଚିଲେ, ଆଉ ଓଜନ ଠିକ୍ ଥିଲେ, ଆମର ଆଉ କହିବାର କିଛି ନାହିଁ ।

ଦାମବାବୁ : ସେ ସବୁଥରେ କିଛି ଅସୁବିଧା ହେବନାହିଁ, ବଡ଼ବାବୁ । ମୋର ସମୟଟା ହେଲା ଏକମାତ୍ର ମୂଳଧନ । ସେତକ ନେଇ ମୁଁ ବଞ୍ଚେ । ଆଉ ଜିନିଷ କଥାରେ ଆପଣ objection କରିବାକୁ ଆଦୌ ଚାନ୍ସ ପାଇବେନାହିଁ । ଆମେ ଆଲ୍ତୁ ଫାଲ୍ତୁ ଲୋକ ହେଇଥିଲେ, ବଡ଼ ସାହେବ କ'ଣ ଆମକୁ ଅର୍ଡ଼ର ଦେଇଥାଆନ୍ତେ । ଛାଡ଼ନ୍ତୁ ସେକଥା । ଅର୍ଡର ଚିଠି ମୁଁ ହାତରେ ନେଇଆସିଛି । ଏଇଠି ଦେବି ନାଁ ଅଫିସକୁ ନେଇ ଯିବି ।

ବଡ଼ବାବୁ : ନାଁ, ନା । ଏଇଠି ଦେଇ ଦିଅନ୍ତୁ ।

ଦାମବାବୁ : ହଉ ତାହେଲେ ଏଇ ଚିଠିଟା ରଖନ୍ତୁ । ଆଉ ଏ ଇଫାପ ଦିଟା ବି ପାଖରେ ରଖିଥାଆନ୍ତୁ ।

ବଡ଼ବାବୁ : ଏ ଦି'ଟା କି ଇଫାପା ।

ଦାମବାବୁ : ସେଇଟା ହଉଛି ନଇବଢିର ଉପକାରିତା । ଗୋଟେ ଆପଣଙ୍କର । ଆଉଗୋଟେ ବିଡ଼ିଓ ସାହେବଙ୍କର ।

ବଡ଼ବାବୁ : କ'ଣ କହିଲେ ? ନଈମଜିର ଉପକାରିତା ?

ଦାମବାବୁ : ମାନେ.....ହଁ....ମାନେ..... ସେୟା ନୁହଁ ତ ଆଉ କ'ଣ ?

ବଡ଼ବାବୁ : କେମିତି କଣ ନଈବଢିର ଉପକାରିତା ସେ ବିଷୟରେ ଟିକେ ବୁଝେଇ କୁହନ୍ତୁ ନା ?

ଦାମବାବୁ : ଆପଣ କ'ଣ ଯେ କହୁଛନ୍ତି ବଡ଼ବାବୁ ? ମୁଁ କ'ଣ ଆପଣଙ୍କୁ

ବୁଝେଇବି ?

ବଡ଼ବାବୁ : ତଥାପି ଟିକେ କୁହନ୍ତୁ । ବଡ଼ ମଜାକଥାଟିଏ ପରି ଲାଗୁଛି । ମୁଁ କାହାରିକୁ କହିବିନାହିଁ ।

ଦାମବାବୁ : ତେବେ ଶୁଣନ୍ତୁ । ମୋ ପୁଅ ସ୍କୁଲରେ ପଢୁଛି । ତାକୁ ଟିଉସନ୍ କରିବାକୁ ଜଣେ ସାର୍ ଆସନ୍ତି ।

ବଡ଼ବାବୁ : ସାର୍ କ'ଣ ଘରେ ଆସି ଟିଉସନ୍ କରନ୍ତି ?

ଦାମବାବୁ : ହଁ ।

ବଡ଼ବାବୁ : ତାହେଲେ ବହୁତ ଟଙ୍କା ତ ନଉଥିବେ ?

ଦାମବାବୁ : ସେକଥା ଛାଡ଼ନ୍ତୁ । ଅସଲ କଥାଟା ଆଗ ଶୁଣନ୍ତୁ ।

ବଡ଼ବାବୁ : ହଁ, ହଁ । ସେ କଥାଟା ଆଗଟିକେ କହିଲେ ?

ଦାମବାବୁ : କେମିତି ରଚନା ଲେଖିବାକୁ ହୁଏ ସାର୍ ଏକଥା ପୁଅକୁ ପଢାଉଥିଲେ ।

ଦାମବାବୁ : ସେ ବିଷୟ ପଢେଇବାକୁ ଯାଉ କହିଲେ କି ରଚନା ଲେଖିବାକୁ ହେଲେ, ସମ୍ପୂର୍ଣ୍ଣ ବିଷୟଟିକୁ ପାଞ୍ଚଭାଗରେ ବିଭକ୍ତ କରିଦେବ । ପ୍ରଥମଟି ହେଲା ଉପକ୍ରମଣିକା, ଦ୍ୱିତୀୟଟି ହେଲା ବିଷୟବସ୍ତୁ, ତୃତୀୟରେ ଉପକାରିତା, ଚତୁର୍ଥରେ ଅପକାରିତା ଏବଂ ପଞ୍ଚମ ତଥା ଶେଷରେ ଉପସଂହାର । ମୁଁ ତ ସେକଥାଗୁଡ଼ାକ ମନେମନେ ଭାବୁଥିଲି, ହେଲେ ଠିକ୍ ପରେପରେ ସାର୍ କହିଲେ, ଅମ ରାଜ୍ୟରେ ବର୍ଷା ଋତୁରେ ଭୀଷଣ ବନ୍ୟା ଆସେ । ତୁମେ ତ ଦେଖିଥିବ ।

ବଡ଼ବାବୁ : ଗତବର୍ଷ ତ ସେପରି ବଡ଼ବନ୍ୟା ହେଇନଥିଲା । ତଥାପି ବନ୍ୟା ହେଇଥିଲା । ପୁଅତ ନିଶ୍ଚୟ ହଁ କହିଥିବ ।

ଦାମବାବୁ : ପୁଅ ହଁ କରୁ କି ନାଁ କରୁ ସେକଥା ଶୁଣୁଛି କିଏ ? ସାର୍ କହିଲେ, ନଈବଢି ବିଷୟରେ ରଚନା ଲେଖିବାକୁ । ସିଏ ପରଦିନ ଆସି ଦେଖିବେ ଏହାକହି ସାର୍ ଚାଲିଗଲେ ।

ବଡ଼ବାବୁ : ପୁଅ ରଚନାଟି କେମିତି ଲେଖିଲା ?

ଦାମବାବୁ : ପୁଅ ଆଉ ଲେଖିଲା କ'ଣ ? ଧରିଲା ମତେ । କହିଲା ବାପା ! ସାର୍ ଦେଇଥିବା ରଚନାକୁ ଏଇ ପାଞ୍ଚଟି ପଏଣ୍ଟ ଅନୁସାରେ

ଲେଖିବାକୁ ପଡ଼ିବ । ମତେ ଟିକେ ବତେଇ ଦିଅ ।

ବଡ଼ବାବୁ : ଆପଣ କ'ଣ ବତେଇଲେ ?

ଦାମବାବୁ : ମୁଁ ଆଉ କ'ଣ ବତେଇବି ? ଏଇ ନଈବଢ଼ିର ଉପକାରିତା ପଏଣ୍ଟଟାତ ମତେଭାରି ଅଡୁଆରେ ପକେଇଲା । ଆଉ ମୁଁ ଏଣୁତେଣୁ କାମର ବାହାନା କରି ସିନା ପୁଅଠୁଁ ଖସିଗଲି, ହେଲେ ନିଜଠୁଁ ଆଦୌ ଖସି ପାରିଲିନାହିଁ । କିନ୍ତୁ ଏଇ ବନ୍ୟାପାଇଁ ରିଲିଫ୍ ଜିନିଷ ଯୋଗାଇବାକୁ ଅର୍ଡର ପାଇଲା ବେଳକୁ ସେ ପଏଣ୍ଟ ପୁରା ବୁଝିଗଲି ।

ବଡ଼ବାବୁ : କ'ଣ ବୁଝିଲେ, ମତେ ଟିକେ ବୁଝେଇ ଦିଅନ୍ତୁ ।

ଦାମବାବୁ : ମାନେ ଏଇ ଜିନିଷ ସପ୍ଲାଇ କରିବାରେ, ଯେଉଁ ଲାଭ ହେବ, ସେଟା ହେଲା ମୋପାଇଁ ନଈବଢ଼ିର ଉପକାରିତା । ଆଉ ପର୍‌ସେଣ୍ଟେଜ୍ ଆକାରରେ ଆପଣଙ୍କୁ ଯାହା ମିଳିବ, ସିଏ ହେବ ଆପଣଙ୍କ ପାଇଁ ନଈବଢ଼ିର ଉପକାରିତା ।

ବଡ଼ବାବୁ : ତା'ହେଲେ ସେଇ ବାବଦକୁ ବିଡ଼ିଓ ବାବୁ, ସ୍ଥାନୀୟ ବଡ଼ହାକିମ, ଆଉ ଆଉ ମାନେ, ଆଉ ଆଉମାନେ, ଆଉ ଆଉମାନେ, ଯାହା ପାଇବେ, ତାହା ତାଙ୍କପାଇଁ ନଈବଢ଼ିର ଉପକାରିତା । (ହସି ଉଠିଲେ । ହସରେ ହସ ମିଳେଇଲେ ଦାମବାବୁ ଓ ହଠାତ୍ ହସ ମଝିରୁ ବନ୍ଦ ହେଇ ନିରବରେ ଠିଆ ହେଲେ ।)

ଦାମବାବୁ : ମୋକଥା ଆପଣଙ୍କୁ ଲାଗିଲା ଆଜ୍ଞା ।

ବଡ଼ବାବୁ : ନଈବଢ଼ିର ଉପକାରିତା ମିଳୁଥିବା ପର୍ଯ୍ୟନ୍ତ ଆମ ବ୍ଲକ୍‌ଅଫିସ୍‌ରେ ଆପଣଙ୍କର ଆଉ କିଛି ଅସୁବିଧା ହେବନି ଦାମବାବୁ । ମୁଁ ଆସୁଛି । (ପ୍ରସ୍ଥାନ)

ଆଉ ଜଣେ ବଡ଼ବାବୁ : (ପ୍ରବେଶ) ଆପଣ ବୋଧହୁଏ.....

ଦାମବାବୁ : ମୁଁ ଆଜ୍ଞା ଦାମୋଦର ଦାସ ।

ବଡ଼ବାବୁ : ମୁଁ ତ ଆପଣଙ୍କୁ ଖୋଜୁଥିଲି ।

ଦାମବାବୁ : ମୁଁ ବି ଆପଣଙ୍କୁ ଖୋଜୁଥିଲି । ଆପଣତ ଆମ ଲକ୍ଷ୍ମଣପୁର ବ୍ଲକ୍‌ର ବଡ଼ବାବୁ ।

ବଡ଼ବାବୁ : ହଁ ।

ଦାମବାବୁ : ଆପଣଙ୍କର ଗୋଟେ ଚିଠି ମୋ ପାଖରେ ରହିଯାଇଛି । ସେଟା ଏଇଠି ଦେବି ନା ଘରକୁ ନେଇ ଦେଇଆସିବି ।

ବଡ଼ବାବୁ : ନା, ନା । ଘରକୁ ଯିବା ଦରକାର ନାହିଁ । ଏଇଠି ମତେ ଦେଇ ଦିଅନ୍ତୁ ।

ଦାମବାବୁ : ହଉ ଆଜ୍ଞା । ଏଇ ଚିଠି ଆଉ ଏ ଦି'ଟା ଅନ୍ୟ ଲଫାପା ।

ବଡ଼ବାବୁ : ଏ ଅନ୍ୟ ଦୁଇଟା ଲଫାପା କ'ଣ ?

ଦାମବାବୁ : ସେ କିଛି ନୁହେଁ । ଯାହା କିଛି, ଯତ୍‌ସାମାନ୍ୟ ନଈବଢିର ଉପକାରିତା ବାବଦକୁ ......

ବଡ଼ବାବୁ : ଓହୋ....(ହସିହସି) ନଈବଢିର ଉପକାରିତା ନା..... ?

(ଚାଲିଗଲେ)

(ଏମିତି ଅନ୍ୟ ବଡ଼ବାବୁମାନେ ଜଣକ ପରେ ଜଣେ ଆସିଲେ । ଚିଠି ଓ ନଈବଢ଼ିର ଉପକାରିତା ନେଇ ଚାଲିଗଲେ । ଦାମବାବୁ ସେମାନଙ୍କୁ ଲକ୍ଷ୍ୟ କରୁଛନ୍ତି, ଏତିକିବେଳେ ବିପରୀତ ଦିଗରୁ ପ୍ରବେଶ କଲେ ଅନୁପମା । ସୁନ୍ଦରୀ, ବୟସ ପ୍ରାୟ ତିରିଶ ବର୍ଷ । ଦାମବାବୁଙ୍କୁ ପଛରୁ ଦେଖି ।)

ଅନୁପମା : ଆପଣ କେଉଁଠିକା ବିଡ଼ିଓ ?

ଦାମବାବୁ : (ଚମକିପଡ଼ି) ମୁଁ.....ବିଡ଼ିଓ.... ? ନାଇଁ ଆଜ୍ଞା..... ବିଡ଼ିଓ.....ମୁଁ ନୁହେଁ ।

ଅନୁପମା : ଆଉ ? ଆପଣ କିଏ ? ଏଠି କ'ଣ କରୁଛନ୍ତି ? ମୁଁ ଶୁଣିଲି ସବୁ ବିଡ଼ିଓମାନେ ଏଇଠି ଅଛନ୍ତି ବୋଲି ?

ଦାମବାବୁ : ଥିବେ....ଥିବେ ଆଜ୍ଞା । ନିଶ୍ଚୟ ଥିବେ । ଠିକ୍ ଏଇଠି ନଥିଲେ ବି, ଏଇ ପାଖରେ କେଉଁଠି ଥିବେ ।

ଅନୁପମା : ତେବେ ଆପଣ କିଏ ?

ଦାମବାବୁ : ମୁଁ ଜଣେ....ମାନେ.....ଜଣେ.....ଏଇ ସାଧାରଣ ନାଗରିକ । ରାଜ୍ୟ ବଢି....ମାନେ....ଏଇ ଘଡ଼ିସନ୍ଧି ସମୟରେ ସାହାଯ୍ୟ....ମାନେ ପ୍ରଶାସନକୁ ସାହାଯ୍ୟ

କରିବାକୁ ଆସିଛି ।

ଅନୁପମା : ଆରେ.....ଆପଣତ ତା'ହେଲେ ଜଣେ ଉଚ୍ଚକୋଟୀର ସମାଜସେବୀ ପରିମନେ ହେଉଛନ୍ତି ? ଆପଣଙ୍କର ନାମ କ'ଣ ? ଘର କେଉଁଠି..... ?

ଦାମବାବୁ : ହଁ, ମୁଁ ସମାଜସେବୀ ନୁହେଁ ଆଉ କ'ଣ ? ଏଇ ବଢ଼ି ସମୟରେ ଯେତେବେଳେ ସେବା କରିବାକୁ ଆସିଛି, ଯାକୁତ ନିଶ୍ଚୟ ସମାଜସେବା ବୋଲି କହିବାକୁ ହେବ ।

ଅନୁପମା : ସବୁ କହୁଛନ୍ତି ଯେ, (ଟିକିଏ ଗେହ୍ଲେଇ ହୋଇ) ହେଲେ, ନାଁତ କହୁ ନାହାନ୍ତି ।

ଦାମବାବୁ : ନାଁ..... । ନାଁରୁ କ'ଣ ପାଇବେ ଆପଣ ? ସିଏ ତ ଗୋଟେ ଶବ୍ଦ । ଅନେକରୁ ଏକକୁ ନିର୍ଦ୍ଦିଷ୍ଟ କରିବାପାଇଁ ନାଁ ଦିଆଯାଏ । ଆପଣ ଯଦି ନିହାତି ଜିଗର କରୁଛନ୍ତି, ତେବେ ନାଁ ଟା କହୁଛି ଶୁଣନ୍ତୁ । ମୋ ନାଁ ଦାମୋଦର ଦାସ । ପି: ଈଶ୍ୱର କୃଷ୍ଣଚନ୍ଦ୍ର ଦାସ ସା: ଜନକଲ୍ୟାଣପୁର, ଥାନ ଆଉ ଜିଲ୍ଲା ଆମ ଏଇ ଯାଜପୁର ।

ଅନୁପମା : ବଡ଼ ଆନନ୍ଦ ଲାଗିଲା । ଆପଣଙ୍କ ପରିଚୟ ପାଇ ମୁଁ ବିଶେଷ ଖୁସି ହେଲି । ଆଚ୍ଛା ଦାମବାବୁ ! ଆପଣ କି ପ୍ରକାର ସମାଜସେବା କରନ୍ତି ?

ଦାମବାବୁ : ସେକଥା ଛାଡ଼ନ୍ତୁ ଆଜ୍ଞା ! ମୋ ସମାଜସେବା ହେଲା ସବୁ ରକମର, ଯେତେବେଳେ ଯେମିତି ସେବା ଦରକାର, ମୁଁ ସେମିତି ସେବା କରିପାରିବି । ଧରନ୍ତୁ ବାତ୍ୟା, ବନ୍ୟାବେଳେ ଖାଦ୍ୟ, ଶସ୍ୟ ଠାରୁ ଆରମ୍ଭକରି ଜନସେବାରେ ନିୟୋଜିତ ହେବାପାଇଁ ସିମେଣ୍ଟ, ଲୁହାଛଡ଼ ପ୍ରଭୃତି ଯୋଗାଇବା । ମରୁଡ଼ିବେଳେ ପାଣିପମ୍ପ, ନଳକୂଅରେ ବ୍ୟବହାର ହେବାପାଇଁ ପାଇପ୍, କୂଅ, ପୋଖରୀ ଖୋଳିବାପାଇଁ କୋଡ଼ି, ଶବଳ, କୋଦାଳ, ନିର୍ବାଚନ ସମୟରେ ପୋଷ୍ଟର, ଲିଫ୍‌ଲେଟ୍, ମାଇକ୍ ଠାରୁ ଆରମ୍ଭକରି ପ୍ରସେଶନ୍ କରିବାଲୋକ ପର୍ଯ୍ୟନ୍ତ ମୁଁ ସବୁ ଜିନିଷ ସରକାରୀ ଓ ବେସରକାରୀ ଉଭୟ ଲୋକଙ୍କୁ

ସପ୍ଲାଇ କରିପାରେ ।

ଅନୁପମା : ଆଚ୍ଛା..... ? ତା'ହେଲେ ସେଥିରୁତ ଆପଣ ବେଶ୍ ଦି'ପଇସା ରୋଜଗାର କରୁଥିବେ ?

ଦାମବାବୁ : କୃଷ୍ଣ, କୃଷ୍ଣ, କୃଷ୍ଣ । ଆପଣ ସେ ଟଙ୍କାପଇସା ରୋଜଗାର କଥା ଏ ସମାଜସେବା ଭିତରେ ପୂରାନ୍ତୁ ନାହିଁ । ସେବାମାନେ ସେବା । ସେବା କରିବାକୁ ହେଲେ, ମଣିଷ ଯତ୍‌କିଞ୍ଚିତ୍ ପାରିଶ୍ରମିକ ଗ୍ରହଣ କରିଥାଏ । ସେବାରୁ ମୁନାଫା ଆଦାୟ କଲେ, ତାହା ବ୍ୟବସାୟ ହୋଇଯାଏ ।

ଅନୁପମା : ଆପଣ ଠିକ୍ କହୁଛନ୍ତି ଦାମବାବୁ । ଆପଣ ଯେମିତି ସମାଜସେବା କରୁଛନ୍ତି, ମତେଟିକେ ସେମିତି ସେବାକରିବାକୁ ଉପାୟ ଶିଖେଇ ଦିଅନ୍ତୁ ନା ?

ଦାମବାବୁ : ମୁଁ ଆଉ ଶିଖେଇବି କ'ଣ ? ଆପଣ ଠିକ୍ ଲାଇନ୍‌ରେ ଅଛନ୍ତି । ଏଇ ବାଟରେ ଗଲେ, ନିଶ୍ଚୟ ଅସଲ ସେବା କରିବାର ଉପାୟ ଶିଖିଯିବେ । ଏଥର ବନ୍ୟାସମୟରେ ଖାଲି ଜିଲ୍ଲା ଅଫିସ୍, ବ୍ଲକ୍ ଅଫିସ୍, ରିଲିଫ୍ କ୍ୟାମ୍ପ, ଆଉ ମନ୍ତ୍ରୀଙ୍କ ବଙ୍ଗଳା ଆଡ଼େ ଯିବାଆସିବା କରି ସବୁ କାମ ଗୁଡ଼ାକ ନିଠେଇ ନିଠେଇ ଦେଖିଯାଆନ୍ତୁ । ଆର ବର୍ଷକୁ ବୋଧହୁଏ, ପୁଣି ବାତ୍ୟା ପାଛି ପଡ଼ିବ । ସେତେବେଳକୁ ଆପଣ ପୂରାପୂରି ସମାଜସେବୀ ବନିଯାଇଥିବେ ।

ଅନୁପମା : ତା'ହେଲେ ବର୍ତ୍ତମାନ କ'ଣ କରିବି ଟିକେ ବତେଇ ଦିଅନ୍ତୁ ।

ଦାମବାବୁ : ଏଇ ବନ୍ୟାରୁ ଯଦି ଆପଣ ଜନସେବା କରିବାକୁ ଚାହୁଁଛନ୍ତି, ତେବେ ଆମ ବିଡ଼ିଓ ବାବୁମାନଙ୍କ ଭିତରୁ ଯିଏ ଟିକେ ଅପେକ୍ଷାକୃତ ଅଳ୍ପ ବୟସ୍କ, ତାଙ୍କରି ଜିପ୍‌ରେ ବସି ତାଙ୍କରି ବ୍ଲକ୍‌କୁ ଚାଲିଯାଆନ୍ତୁ । ବନ୍ୟାତ ଆସି ପହଞ୍ଚିବା ଉପରେ । ବନ୍ୟା ଆସିବାମାତ୍ରେ ତଳୁଆ ଅଞ୍ଚଳରୁ ଲୋକମାନଙ୍କୁ ଆଣି ଆଶ୍ରୟ ସ୍ଥଳରେ ଥଇଥାନ କରିବାପାଇଁ ସରକାରୀ ନିଷ୍ପତ୍ତି ହୋଇଛି । ଆପଣ ଜବରଦସ୍ତ ଗୋଟେ ଆଶ୍ରୟସ୍ଥଳରେ ସ୍ତ୍ରୀଲୋକମାନଙ୍କର ଦାୟିତ୍ୱ ନେଇଯିବେ ।

ଅନୁପମା : ଗୋଟିଏ ଆଶ୍ରୟ ସ୍ଥଳରେ ଦାୟୀତ୍ୱନେଲେ, ସମସ୍ତେ ମତେ ଜାଣିବେ କେମିତି ?

ଦାମବାବୁ : ମୁଁ ତ ସେଇ କଥା କହୁଛି । ପ୍ରଥମ ପର୍ଯ୍ୟାୟରେ ବନ୍ୟା ଯେତିକି ଦିନ ମାନେ ଦୁଇ ବା ତିନିଦିନ ରହିବ, ସେହି ସମୟରେ ଟିକେ ଅଧିକ ପରିଶ୍ରମ କରି ଲୋକଙ୍କପାଇଁ କାମ କରିବେ । ଯେମିତି ଖବରକାଗଜ ବାଲା ବା ଟିଭି ବାଲା ଆସିବେ, ସାଙ୍ଗେସାଙ୍ଗେ ସେମାନଙ୍କୁ ଆଶ୍ରୟ ସ୍ଥଳକୁ ନେଇଯିବେ । ସେଠାରେ ଆଗରୁ ଟିକେ ଅଧିକ ଯତ୍ନ ନେଇଥିବା ଦୁଇଚାରିଜଣ ସ୍ତ୍ରୀଲୋକଙ୍କ ମୁହଁରେ ସରକାରଙ୍କ ପ୍ରଶଂସା, କ୍ୟାମ୍ପର ପ୍ରଶଂସା, ସ୍ଥାନୀୟ ବିଡ଼ିଓ ଆଉ ଜିଲ୍ଲା ଅଧିକାରୀଙ୍କ ପ୍ରଶଂସା କରେଇନେବେ । ପୁଣି ସମସ୍ତେ ଯେମିତି କହୁଥିବେ କି ଏଇ ମାଡ଼ମ୍ ମାନେ ଆପଣଙ୍କୁ ଦେଖାଇ, ଆମର ଅନେକ ସେବାଯତ୍ନ କରିଛନ୍ତି । ଆମକୁ ଅନେକ ସାହାଯ୍ୟ କରିଛନ୍ତି ।

ଅନୁପମା : ଟି.ଭି. ଆଉ ଖବରକାଗଜବାଲା କ'ଣ ସେକଥା ମାନିବେ ?

ଦାମବାବୁ : ମାନିବେ ନାହିଁ ? ଅଲବତ୍ ମାନିବେ । କେମିତି ମାନିବେ ନାହିଁନା ? ଆପଣଙ୍କ ପରି ଜଣେ ଦିବ୍ୟ ସୁନ୍ଦରୀ, ଉଚ୍ଚଶିକ୍ଷିତା ଅଳ୍ପ ବୟସ୍କା ସମାଜସେବୀ, ଏତେ କାମ କରିଛନ୍ତି, ସେକଥା କିଏ ନମାନି ରହିପାରିବ ?

ଅନୁପମା : ଆଚ୍ଛା ହେଲା । ଟି.ଭି. ଆଉ ଖବରକାଗଜରେ, ସେକଥା ବାହାରିଲାପରେ କ'ଣ କରିବି ?

ଦାମବାବୁ : ଆଉ ଗୋଟେ କ୍ୟାମ୍ପକୁ ଚାଲିଯିବେ । ଆଉ ଜଣେ ବିଡ଼ିଓଙ୍କୁ ଧରିବେ । ବର୍ଷା ଋତୁଟା ତ ପ୍ରାୟ ଚାରିମାସ । ଏହି ଚାରିମାସକୁ ବନ୍ୟା ଆଉ ବାତ୍ୟା ଋତୁ ବୋଲି ଧରି ନିଅନ୍ତୁ । ଋତୁସାରା ଏ କ୍ୟାମ୍ପରୁ ସେ କ୍ୟାମ୍ପକୁ, ସେ କ୍ୟାମ୍ପରୁ ଏ କ୍ୟାମ୍ପକୁ, ଏ ବିଡ଼ିଓଙ୍କ ଗାଡ଼ିରୁ ସେ ବିଡ଼ିଓଙ୍କ ଗାଡ଼ିକୁ, ସେ ବିଡ଼ିଓଙ୍କ ଗାଡ଼ିରୁ କେଉଁ କଣ୍ଟ୍ରାକ୍ଟରଙ୍କ ଗାଡ଼ିକୁ, ସେଇଠୁ କେଉଁ ଏମ୍ଏଲ୍-ଏଙ୍କ ଗାଡ଼ିକୁ ଏମିତି ସମାଜସେବା କରିଗଲେ, ଆରବର୍ଷକୁ ଆପଣ ମତେ ସମାଜସେବା ଶିଖେଇବେ ।

ଅନୁପମା : ଆପଣ ବର୍ତ୍ତମାନ କୁଆଡ଼େ ଯିବେ ?

ଦାମାବାବୁ : ମୋ ଯିବାକଥା ଛାଡ଼ନ୍ତୁ । ଆଗେ ବିଡ଼ିଓ ବାବୁମାନେ କୁଆଡ଼େ ଗଲେ ଦେଖନ୍ତୁ । ନଚେତ ସମାଜସେବା କାମଟା ହାତଛଡ଼ା ହେଇଯିବ ।

ଅନୁପମା : ତା'ହେଲ ମୁଁ ଆସୁଛି ?

ଦାମବାବୁ : ହଁ, ହଁ, ଶୀଘ୍ର ଆସନ୍ତୁ ।

ଅନୁପମା : ଆପଣଙ୍କ ସହିତ ପୁଣି କେଉଁଠି ଦେଖା ହେବ ?

ଦାମବାବୁ : ଦେଖନ୍ତୁ ଆପଣ ସମାଜସେବା କରୁଛନ୍ତି । ମୁଁ ବି ସମାଜସେବା କରୁଛି । ଆମେ ଦୁଇଜଣ ଯେତେବେଳେ ଗୋଟିଏ ରାସ୍ତାରେ ଯାଉଛନ୍ତି, କେଉଁଠି ନା କେଉଁଠି ଦେଖାହେଇଯିବ ନିଶ୍ଚୟ ।

ଅନୁପମା : ତା'ହେଲେ ଆସୁଛି ଆଜ୍ଞା । ନମସ୍କାର ।

ଦାମବାବୁ : ନମସ୍କାର, ନମସ୍କାର ।

(ଅତ୍ୟନ୍ତ ବ୍ୟସ୍ତ ଭାବରେ ଜଣେ ବଡ଼ବାବୁଙ୍କର ପ୍ରବେଶ)

ବଡ଼ବାବୁ : ଦାମବାବୁ ! ଆପଣ ଆଉଗୋଟେ ଗୁରୁତ୍ୱପୂର୍ଣ୍ଣ ବିଷୟରେ ସମ୍ପୂର୍ଣ୍ଣଭାବରେ ବୋଧହୁଏ ଭୁଲି ଯାଇଛନ୍ତି ?

ଦାମବାବୁ : କେଉଁ ଗୁରୁତ୍ୱପୂର୍ଣ୍ଣ ବିଷୟ ଆଜ୍ଞା ? (କିଞ୍ଚିତ ଆଶ୍ଚର୍ଯ୍ୟହୋଇ)

ବଡ଼ବାବୁ : ଆପଣ ବୋଧହୁଏ ତଙ୍କା ପଠାଇବା କଥା ?

ଦାମବାବୁ : ହଁ, ଥିଲା ।

ବଡ଼ବାବୁ : ମାନେ ?

ଦାମବାବୁ : ଏବେ ଆଉ ନାହିଁ । (ନିମ୍ନ ସ୍ୱରରେ)

ବଡ଼ବାବୁ : କାହିଁକି ?

ଦାମବାବୁ : କାହିଁକି ଆଉ କ'ଣ ? (ନିମ୍ନ ସ୍ୱରରେ)

ବଡ଼ବାବୁ : ତଙ୍କାକ'ଣ ଯୋଗାଡ଼ ହୋଇପାରିଲା ନାହିଁ ?

ଦାମବାବୁ : ନା, ନା, ସେକଥା ନୁହେଁ । ଆଜିକାଲି କେଉଁ ଜିନିଷ ନ ମିଳୁଛି ଯେ, ଯୋଗାଡ ହୋଇ ପାରିବନାହିଁ ?

ବଡ଼ବାବୁ : ତା'ହେଲେ ତଙ୍କା ଆସିବ ନାହିଁ, କାହିଁକି ?

ଦାମବାବୁ : ସିଏ ବଡ଼ ଗହନ କଥା ।

ବଡ଼ବାବୁ : ଆମକୁ ଟିକେ ଶୁଣାନ୍ତୁ ।

ଦାମବାବୁ : କ'ଣ ଆଉ ଶୁଣେଇବି ଆଜ୍ଞା ? ସେଇଥିରେ ମୋ କମ୍ପାନୀ ଫେଲ୍ ।

ବଡ଼ବାବୁ : କ'ଣ ହେଲା ତେବେ ?

ଦାମବାବୁ : ଡଙ୍ଗା ଅର୍ଡର ପାଇବା ମାତ୍ରେ, ମୁଁ ସେ ସବୁ ଯୋଗାଡ଼ରେ ଲାଗିପଡ଼ିଲି । ମତେ ପ୍ରତି ବ୍ଲକ୍‌କୁ ତିନିଟା ଲେଖାଁ ଆଉ ମ୍ୟୁନିସିପାଲଟି ପାଇଁ ବି ତିନିଟା, ଏମିତି ଏକୋଇଶିଟା ଡଙ୍ଗା ଦେବାକୁ କୁହା ଯାଇଥିଲା । ପରେ ପୁଣି ଜିଲ୍ଲା ଅଫିସ୍‌ରେ ଆଉ ଚାରିଟା ଡଙ୍ଗା ରିଜର୍ଭ ରଖିବାକୁ କୁହାଗଲା ।

ବଡ଼ବାବୁ : ସେଥିରେ ଅସୁବିଧା କ'ଣ ହେଲା ?

ଦାମବାବୁ : (ନିମ୍ନସ୍ୱରରେ) ଡଙ୍ଗା ଫାଇଲ୍‌ଟା ଆପଣଙ୍କ ପାଖରେ ଅଛି କି ?

ବଡ଼ବାବୁ : ହଁ ।

ଦାମବାବୁ : ତା'ହେଲେ ସବୁକଥା ଆଗତୁରା ଆପଣଙ୍କୁ କହିଦିଏଁ ।

ବଡ଼ବାବୁ : ସେଇଥିପାଇଁ ତ ଆପଣଙ୍କୁ ପଚାରୁଛି ।

ଦାମବାବୁ : ଅର୍ଡର ପାଇ ଡଙ୍ଗା ଯୋଗାଡ଼ ପାଇଁ ପଠେଇଦେଲି ।

ବଡ଼ବାବୁ : କାହିଁ ଏଠିତ ପହଞ୍ଚି ନାହିଁ ?

ଦାମବାବୁ : ମୋ କଥା ଆଗେଟିକେ ଶୁଣନ୍ତୁ । ନଈଏ ନଈଏ ଡଙ୍ଗାସବୁ ଆସିଲା । ହେଲେ ବାଟରେ ତାକୁ ଧରିଲେ ଫରେଷ୍ଟ କ୍ଲାର୍କ ।

ବଡ଼ବାବୁ : କାହିଁକି ଧରିଲେ ?

ଦାମବାବୁ : କହିଲେ, ଏତେଗୁଡ଼ାଏ ଡ଼ଙ୍ଗା ଜଙ୍ଗଲ ଅଞ୍ଚଳରେ ତିଆରି କରି ନେଇଯାଉଛ । ଯେଉଁ କାଠରେ ଏ ଡଙ୍ଗା ବନେଇଛ, ତାର ଟି.ଟି. ପରମିଟ୍ ଦେଖାଅ ।

ବଡ଼ବାବୁ : ଆପଣ ଦେଖେଇ ଦେଲେ ନାହିଁ ?

ଦାମବାବୁ : ଆଜ୍ଞା, ଥିଲେତ ଦେଖାଇବି ?

ବଡ଼ବାବୁ : ତା'ହେଲେ, ସେ ଡଙ୍ଗାଗୁଡ଼ାକ କ'ଣ ଚୋରା କାଠରେ ତିଆରି ହୋଇଥିଲା ?

ଦାମବାବୁ : ଆପଣ କ'ଣ ଆଗର ଫରେଷ୍ଟ ଡିପାର୍ଟମେଣ୍ଟରେ ଚାକିରୀ କରିଥିଲେ କି ?

ବଡ଼ବାବୁ : କାହିଁକି ?

ଦାମବାବୁ : ସେ ବାବୁମାନେ ମତେ ଯେମିତି ଜେରା କରୁଥିଲେ, ଆପଣ ବି ମତେ ସେମିତି ପ୍ରଶ୍ନ ପଚାରୁଛନ୍ତି ?

ବଡ଼ବାବୁ : ଆଚ୍ଛା, ଆଚ୍ଛା, ତା'ପରେ କ'ଣ ହେଲା କୁହନ୍ତୁ ।

ଦାମବାବୁ : ମୁଁ ସେ ବାବୁମାନଙ୍କୁ କହିଲି, ଆଜ୍ଞା ! ଏ ଡଙ୍ଗାଗୁଡ଼ାକ ମୁଁ ବନ୍ୟା ସାହାଯ୍ୟପାଇଁ ଭଡ଼ାକୁ ଯୋଗାଡ଼ କରିନେଉଛି । ଆଉ ଏଗୁଡ଼ାକ କେହି ନୂଆ ନୁହେଁ, ସବୁ ପୁରୁଣା ଡ଼ଙ୍ଗା । ଏ କାଠ ପାଇଁ କିଛି ପର୍‌ମିଟ୍ ନାହିଁ ।

ବଡ଼ବାବୁ : ତା'ପରେ ସେମାନେ କ'ଣ କହିଲେ ?

ଦାମବାବୁ : ସେମାନେ କହିଲେ, ବନ୍ୟା ହେଉ କି ବାତ୍ୟା ହେଉ, ପର୍‌ମିଟ୍ ନାହିଁ ଯେତେବେଳେ ଏକାଠ ଡ଼ଙ୍ଗା ଆମ ଏ ଗେଟ୍ ଟପି ଆଗକୁ ଯାଇପାରିବ ନାହିଁ ।

ବଡ଼ବାବୁ : ସେଇଠୁ କ'ଣ ହେଲା ?

ଦାମବାବୁ : ମୁଁ କ'ଣ ଛାଡ଼ିବା ଲୋକ ? ଯାଇଁ ସିଧା ପହଞ୍ଚିଲି ତାଙ୍କ ବଡ଼ହାକିମ ଚଉଡ଼ା ସାହେବଙ୍କ ପାଖରେ । ତାଙ୍କୁ ସବୁକଥା କହିଲି, ବଡ଼ହାକିମଙ୍କ ଅର୍ଡ଼ର ଦେଖାଇଲି । ଜାତିର ଏ ପ୍ରାକୃତିକ ବିପତ୍ତି ସମୟରେ ସମସ୍ତଙ୍କର କର୍ତ୍ତବ୍ୟ ବିଷୟ ଠିକେଠିକେ ବୁଝେଇଲି ।

ବଡ଼ବାବୁ : ତା'ପରେ ?

ଦାମବାବୁ : ତା'ପରେ ମୋ କଥାରେ ସାହେବ ମାନିଯାଇ କହିଲେ, ସାଙ୍ଗେସାଙ୍ଗେ ସରଜମିନ୍ ତଦନ୍ତରେ ଯିବି । ଜାତୀୟ ବିପତ୍ତି ସମୟରେ ଆମ ବିଭାଗ ଅନ୍ୟ ବିଭାଗ ସହିତ ହାତ ମିଶାଇ ଜନସେବା କରିବ - ବାଧାଦେବ ନାହିଁ ।

ବଡ଼ବାବୁ : ସାହେବତ ଠିକ୍ କହିଲେ ।

ଦାମବାବୁ : ହଁ, ଠିକ୍ କହିଲେ । ଅନ୍ତତଃ ଏଇଧାରଣା ମୋର ସେତେବେଳେ ହୋଇଥିଲା ?

ବଡ଼ବାବୁ : କାହିଁକି ? ପରେ ପୁଣି ଆଉ କ'ଣ ହେଲା କି ?

ଦାମବାବୁ : ମତେ ସାଙ୍ଗରେ ନେଇ ଚଉଡ଼ା ସାହେବ ଆସି ଫରେଷ୍ଟଗେଟ୍

ପାଖ ନଈକୂଳରେ ପହଞ୍ଚିଲେ । ଡଙ୍ଗା କାଠପାଇଁ ପର୍‌ମିଟ୍ ଖୋଜ ନାହିଁ ବୋଲି ତାଙ୍କର ଷ୍ଟାଫ୍‌ମାନଙ୍କୁ ରୋକ୍‌ଠୋକ୍ କହିଦେଲେ । ଏକଥା ଶୁଣି ସେମାନଙ୍କର ମୁହଁ ଶୁଖିଗଲା । ଆଉ ମୋ ମୁହଁ ଉଜ୍ଜଳ ହୋଇଉଠିଲା ।

ବଡ଼ବାବୁ : ହଁ, ନ୍ୟାୟ କଥାତ ସାହେବ୍ କହିଲେ ।

ଦାମବାବୁ : ଜଣେ ବାବୁ କହିଲେ, ସାର୍ ! କାଠକଥା ସିନା ଧରିବୁ ନାହିଁ ? ହେଲେ ଏ କଞ୍ଚା ବାଉଁଶତକ ?

ବଡ଼ବାବୁ : ବାଉଁଶ ? ବାଉଁଶ କୁଆଡୁ ଆସିଲା କି ଦାମ୍‌ବାବୁ ? (ଛପଡ ଦୃଷ୍ଟାମୀର ହସ ସହ)

ଦାମବାବୁ : ଆପଣ କ'ଣ ଭାବୁଛନ୍ତିକି ମୁଁ ବାଉଁଶ ଚୋରୀକରି ଆଣୁଥିଲି । ନାଁ, କଦାପି ନୁହେଁ । ସେ ବାଉଁଶ ଗୁଡ଼ାକ ଡଙ୍ଗାର କାତ । ବନ୍ୟା ଅଞ୍ଚଳକୁ ଡଙ୍ଗାଗୁଡ଼ାକ ଆସୁଥିବାରୁ, ସେଥିପାଇଁ ଡ଼ଙ୍ଗାପିଛା ଦୁଇଟା କରି କଞ୍ଚା ବାଉଁଶର କାତ ସେଥିରେ ରଖାଯାଇଥିଲା ।

ବଡ଼ବାବୁ : ଆପଣ ସେକଥା ସାହେବଙ୍କୁ ବୁଝେଇଲେ ନାହିଁ ?

ଦାମବାବୁ : ସେକଥା କ'ଣ ଚେଷ୍ଟା କରିନଥିଲି କି ? ହେଲେ ସେବାବୁ ଜଣକ କହିଲେ, ପଚିଶଟା ଡ଼ଙ୍ଗାକୁ ପଚିଶଟା କାତ ଦରକାର । ଆପଣ ପଚାଶଟା ବାଉଁଶ କାହିଁକି ନେଉଛନ୍ତି ?

ବଡ଼ବାବୁ : ହଁ, ହଁ, ପଚାଶଟା ବାଉଁଶ କ'ଣ ଦରକାର ?

ଦାମବାବୁ : ମୁଁ ସେ କଥା ନାଉରିଆମାନଙ୍କୁ ପଚାରିଲି । ସେମାନେ କହିଲେ ବନ୍ୟାବେଳେ ନଈରେ ବହୁତ ଖରସୁଅ ପଡିଥିବ । ପୁଣି କେଉଁଠି କେତେ ପାଣି ତା'ର ଠିକ୍ ଠିକଣା ନଥିବ । ତେଣୁ ସବୁ ଡ଼ଙ୍ଗାରେ ଦୁଇଜଣକରି ନାଉରିଆ ଆଉ ଦୁଇଟା କରି କାତ ଦରକାର ।

ବଡ଼ବାବୁ : ଆପଣ ନାଉରିଆମାନଙ୍କ କଥା ସାହେବଙ୍କୁ କହିଲେ ନାହିଁ ?

ଦାମବାବୁ : କହିଛି, କହିଛି । ଖାଲି ତାଙ୍କ କଥା କହିନାହିଁ । ସେମାନଙ୍କୁ ନେଇ ସାହେବଙ୍କ ପାଖରେ ହାଜର କରେଇଲି । ସାହେବ ତାଙ୍କ କଥା ଶୁଣି ରାଜି ହେଲେ । ଆଉ ସବୁ ଡଙ୍ଗା, କାତ ଛାଡ଼ି ଦେବାକୁ କହି ଜିପ୍‌ରେ ବସି ଚାଲିଗଲେ ।

ବଡ଼ବାବୁ : ତାହେଲେ ଡ଼ଙ୍ଗା ଆସିବାରେ ଅସୁବିଧା କ'ଣ ହେଲା ।

ଦାମବାବୁ : ନା, ଅସୁବିଧା ଆଉ କ'ଣ ? ସାହେବ ଚାଲିଗଲା ପରେ ସେଠାରେ ଥିବା ବାବୁ ମଧ ଡଙ୍ଗା ଛାଡ଼ି ଦେବାକୁ ଗାର୍ଡବାବୁଙ୍କୁ ହୁକୁମ୍ କରି ଚାଲିଗଲେ ।

ବଡ଼ବାବୁ : ତା'ପରେ ।

ଦାମବାବୁ : ତା'ପରେ ମୁଁ ଖୁସିହୋଇ ଗାର୍ଡବାବୁଙ୍କୁ ନଈବଢ଼ିର ଉପକାରିତା ବଢେଇ ଦେଲି । ଗାର୍ଡବାବୁ ସେତକ ପକେଟ୍‌ରେ ରଖି ହାମରଟିଏ ଧରି ନଈ ଆଡ଼କୁ ଚାଲିଗଲେ । ମୁଁ ସେତେବେଳ ଯାଏ ଖାଇନଥାଏଁ । ଖାଇବାକୁ ପାଖରେ ଥିବା ଗୋଟେ ହୋଟେଲ୍‌କୁ ଗଲି ।

ବଡ଼ବାବୁ : ତା'ହେଲେ ଆପଣଙ୍କର ସେଠିବି ତ ଛିଡାପଟ ହେଲା ।

ଦାମବାବୁ : (ମୁହଁ ଶୁଖେଇ) ହଁ, ଛିଡାପଟ ନୁହେଁ ଆଉ କ'ଣ ? ମୁଁ ଅଧାଖିଆ ହୋଇଛି, ନାଉରିଆମାନେ ଆସି କହିଲେ, ଗାର୍ଡବାବୁ ଲୁହା ହାମର୍‌ରେ କଞ୍ଚାବାଉଁଶ କାତର ମୂଳଗୁଡ଼ାକୁ ଖୁବ୍ ଜୋରରେ ପିଟି ତାକୁ ଅଧେଅଧେ ଫଟେଇ ଦେଇଛନ୍ତି । ସେ ବାଉଁଶକୁ ଆଉ କାତ ରୂପେ ବ୍ୟବହାର କରି ହେବନି । ଏହା ଶୁଣି, ମୁଁ ଆଉ ଖାଇବି କ'ଣ ? ସେଇ ଅଇଁଠା ହାତରେ ନଈ ଘାଟକୁ ଦଉଡ଼ିଲି ।

ବଡ଼ବାବୁ : ସେଇଠୁ କ'ଣ ହେଲା ?

ଦାମବାବୁ : ଗାର୍ଡବାବୁ ତାଙ୍କ କାମସାରି ଚାଲିଯାଉଥିଲେ । ମତେ ଦେଖି କହିଲେ, ମୁଁ ସବୁ ବାଉଁଶରେ ଚେକ୍ ହାମର ବାଡ଼େଇ ଦେଇଛି । ଆଉ ବାଟରେ ଆପଣଙ୍କୁ କେହି ଧରିବେ ନାହିଁ । ଏତିକି କହି ଆଉଜଣେ ବାବୁଙ୍କ ମଟର ସାଇକଲ୍‌ରେ ବସି ସେ ଚାଲିଗଲା । ଫଟା କାତରେ ନାଉରିଆମାନେ ଡଙ୍ଗା ଆଣିବାକୁ ଅମଙ୍ଗ ହେବାରୁ ମୁଁ ଖର୍ଚାନ୍ତ ଆଉ ହତାଶ ହୋଇ, ଶେଷ ବସ୍ ଧରିଲି ।

ବଡ଼ବାବୁ : ତା'ହେଲେ ଡ଼ଙ୍ଗା କଥା ?

ଦାମବାବୁ : ଆପଣ ଚଳେଇ ନେବେ । ଆପଣଙ୍କ ନଈବଢ଼ିର ଉପକାରିତା

କଥା ମୁଁ ବୁଝିବି ।

ଅନ୍ୟଜଣେ ବଡ଼ବାବୁ : ଦାମବାବୁ !

ଦାମବାବୁ : ଆଜ୍ଞା ।

ବଡ଼ବାବୁ : ଆମ ବ୍ଳକ୍‌ପାଇଁ ଅର୍ଡ଼ର ହୋଇଥିବା ଚୁଡ଼ା, ଚାଉଳ ଆଉ ଗୁଡ଼ ଗାଡ଼ି ସବୁ କାହିଁ ?

ଦାମବାବୁ : ଆପଣ କେଉଁ ବ୍ଳକ୍‌ର ବାବୁ ଆଜ୍ଞା ?

ବଡ଼ବାବୁ : ଆପଣ ଏତେବେଳଯାଏ ସେତିକି ଜାଣି ପାରିଲେ ନାହିଁ ? ମୁଁ ପରା ହରିଦାସପୁର ବ୍ଳକ୍‌ର ।

ଦାମବାବୁ : ହରିଦାସପୁର ତ ? ତେବେ ଗାଡ଼ି ଏଇ ଆସି ପହଞ୍ଚିଲା ବୋଲି ଜାଣନ୍ତୁ ।

ବଡ଼ବାବୁ : ଆପଣମାଇ କେଉଁଠୁ ପଠାଉଛନ୍ତି ?

ଦାମବାବୁ : କାହିଁକି ? ଆମ ଗୋଦାମରୁ ?

ବଡ଼ବାବୁ : ଆପଣଙ୍କ ଗୋଦାମ କେଉଁଠି ?

ଦାମବାବୁ : ଏଇ ଭୁବନେଶ୍ୱରରେ ।

ବଡ଼ବାବୁ : ଭୁବନେଶ୍ୱରରୁ ଟ୍ରକ କେତେବେଳେ ଛାଡ଼ିଲା ?

ଦାମବାବୁ : ଛାଡ଼ିନାହିଁ । କେଉଁଠି କେଉଁଠି ମାଲ ଅନ୍‌ଲୋଡ୍ ହେବ, ତା'ଚିଠା ମତେ ଦେଲେ, ସେଇଠି ସେଇଠି ଅନ୍‌ଲୋଡ୍ କରିବାକୁ ମୁଁ ଟ୍ରକବାଲାକୁ ଲେଖି ଅର୍ଡ଼ର କରିଦେବି ।

ବଡ଼ବାବୁ : (ଟିକେ ବିରକ୍ତ ହୋଇ) ତା'ହେଲେ ସେସବୁ ଜିନିଷ କେତେବେଳେ ଆସି ଏଠି ପହଞ୍ଚିବ ?

ଦାମବାବୁ : (ନମ୍ରତାର ସହ) ବନ୍ୟା ପାଣି ଆସିବା ଆଗରୁ ।

ବଡ଼ବାବୁ : ବଢ଼ିପାଣି ତ ଆସିଗଲାଣି ।

ଦାମବାବୁ : କାହିଁ ? କେଉଁଠି ଅଛି ?

ବଡ଼ବାବୁ : ନଈରେ ।

ଦାମବାବୁ : ତା'ହେଲେ ସିଏତ ବନ୍ୟା ନୁହେଁ । ଖାଲି ବଢ଼ିପାଣି । ସେଥିପାଇଁ ରିଲିଫ୍ ବ୍ୟବସ୍ଥା ହେଇନି ?

ବଡ଼ବାବୁ : ଆପଣଙ୍କୁ ମୁଁ ଆଉ ପାରିବିନାହିଁ ।

ଦାମବାବୁ : ଆପଣଙ୍କର ମତେ ପାରିବା ଦରକାର ନାହିଁ । ଯାହାକୁ ଯାହାକୁ

ପାରିବେ ତାଙ୍କ ପଛରେ ଲାଗନ୍ତୁ । ମୋ କାମ ଠିକ୍ ସମୟରେ ହୋଇଯିବ । ମତେ ଖାଲି ଲିଷ୍ଟ ଦେଇ ଦିଅନ୍ତୁ ।

ବଡ଼ବାବୁ : ଜିନିଷ ଅନ୍‌ଲୋଡ୍ ହେବା ଜାଗାର ଲିଷ୍ଟ ତ ?

ଦାମବାବୁ : ହଁ ।

ବଡ଼ବାବୁ : ଘାଇ ନଭାଙ୍ଗିଲେ, ସେ ଲିଷ୍ଟ୍ ମୁଁ ଆପଣଙ୍କୁ ଦେବି କେମିତି ?

ଦାମବାବୁ : (ବଡ଼ବାବୁଙ୍କୁ ଅଲକ୍ଷରେ ଈଷତ ହସି) ମୁଁ ତ ସେଇଆ କହୁଛି । ଘାଇ ନଭାଙ୍ଗିଲେ, ମୁଁ ଜିନିଷ ପଠାଇବି କେଉଁଠି କି ?

ବଡ଼ବାବୁ : ତା'ହେଲେ କ'ଣ କରିବା ?

ଦାମବାବୁ : କେଉଁ କଥା ?

ବଡ଼ବାବୁ : (ସ୍ୱପ୍ନବିଷ୍ଟ ହୋଇପରି) ଏଇ.....ନଇରେ ଭୀଷଣ ବନ୍ୟାଆସିବ । ବନ୍ଧଭାଙ୍ଗି ବନ୍ୟାଜଳ ଗାଁଗଣ୍ଡାରେ ପଶିଯିବ । ଗାଁ ଲୋକମାନେ ଆସି ସ୍କୁଲଘରେ ଅସ୍ଥାୟୀ ଭାବରେ ରହିବେ । ସେଥିରେ ରିଜର୍ଭେସନ୍‌ର ଶୃଙ୍ଖଳା ଠିକ୍ ଭାବରେ ରଖାଯିବ । ଲୋକମାନଙ୍କ ପାଇଁ ଖାଦ୍ୟ ରନ୍ଧା ହେବ । ରାଜ୍ୟମୁଖ୍ୟ ଆସି ସେମାନଙ୍କୁ ନିଜ ହାତରେ ଖାଇବା ଜିନିଷ ପରଶିବେ । ସବୁ ଖାଦ୍ୟ ସୁଦୃଶ୍ୟ ଆଉ ରୁଚିକର ହୋଇଥିବ । (ହଠାତ କ'ଣ ମନେ ପଡ଼ିଗଲା ପରି) ଆଚ୍ଛା, ଦାମବାବୁ ! ରୁଚିକର ଖାଦ୍ୟ ପ୍ରସ୍ତୁତ କରିବାପାଇଁ, ଭଲ ମସଲା ଦରକାର ।

ଦାମବାବୁ : ଆଜ୍ଞା, ହଁ ।

ବଡ଼ବାବୁ : ଭଲ ମସଲା ମାନେ, ତାକୁ ବଟାବଟି କରିବାକୁ ଶିଳ ଦରକାର ।

ଦାମବାବୁ : ଆଜ୍ଞା, ହଁ ।

ବଡ଼ବାବୁ : ଗାଁ ସାରା ଲୋକଙ୍କର ଘରେ ପାଣି ପଶିଗଲେ, ଶିଳସବୁ ବୁଡ଼ିଯିବ ।

ଦାମବାବୁ : ଆଜ୍ଞା, ହଁ ।

ବଡ଼ବାବୁ : ଗାଁଲୋକମାନେ ଦାମିକା ଆଉ ଦରକାରୀ ଜିନିଷ ସିନା ସାଙ୍ଗରେ ନେଇ ଘରୁ ବାହାରି ଆସିବେ, ହେଲେ ଶିଳ କେହି ଆଣିବେନି ।

ଦାମବାବୁ : ଆଜ୍ଞା, ଠିକ୍ ।
ବଡ଼ବାବୁ : ତେଣୁ ଶିଳ ବିନା ସ୍ୱାଦିଷ୍ଟ ଖାଦ୍ୟ ପ୍ରସ୍ତୁତ କରିବା ସମ୍ଭବନୁହେଁ ।
ଦାମବାବୁ : ଆଜ୍ଞା, ଠିକ୍ ।
ବଡ଼ବାବୁ : (ପୌରାଣିକ ନାଟକର ମୁଖ୍ୟଚରିତ୍ର ପରି) ଖାଦ୍ୟ ସ୍ୱାଦିଷ୍ଟ ନହେଲେ, ମାନବିକ ଅଧିକାର ଭୂଲୁଣ୍ଠିତ ହେଲାବୋଲି ଧରିନେବାକୁ ହେବ ।
ଦାମବାବୁ : ତା'ନୁହେଁ ତ ଆଉ କ'ଣ ? (ବିଦୂଷକ ପରି)
ବଡ଼ବାବୁ : ମାନବିକ ଅଧିକାର ଭୂଲୁଣ୍ଠିତ ହେଲାପରି ଖାଦ୍ୟ ସ୍ୱୟଂ ରାଜ୍ୟ-ଶାସନ-ମୁଖ୍ୟ ପରିବେଷଣ କରୁଛନ୍ତି ବୋଲି, ମିଡ଼ିଆ ଆଉ ହ୍ୟୁମ୍ୟାନ୍ ରାଇଟ୍ସ୍ ବାଲା ଜାଣିଲେ, କଥା ଯାଇଁ କେଉଁଠି ପହଞ୍ଚିବ ।
ଦାବବାବୁ : ତା'ତ ନିଶ୍ଚୟ ।
ବଡ଼ବାବୁ : ଆପଣ ତ ଜାଣନ୍ତି, ଲାଗ୍ ଲାଗ୍ ଦୁଇ ତିନିଟା ଧର୍ଷଣମାମଲା ହୋଇଗଲା ବୋଲି, ଜଣେ ଶାସନମୁଖ୍ୟଙ୍କ ଚାକିରୀ ଗଲା । ଯେ ପୁଣି ଶହ ଶହ ଲୋକଙ୍କ ମାନବିକ ଅଧିକାରକୁ ସ୍ୱୟଂ ରାଜ୍ୟ-ଶାସନ-ମୁଖ୍ୟ ଅସ୍ୱାଦିଷ୍ଟ ଖାଦ୍ୟ ପରିବେଷଣ କରି ନଷ୍ଟ କରିବେ । ଆଉ ଏ ଅସ୍ୱାଦିଷ୍ଟ ଖାଦ୍ୟ ପ୍ରସ୍ତୁତି ଅନ୍ତରାଳରେ କେଉଁଠି ନା କେଉଁଠି ମୋର ପ୍ରଚ୍ଛନ୍ନହାତ ଅଛି ବୋଲି ତଦନ୍ତରୁ ଜଣାପଡ଼ିଲେ, ମୋ ଗଣ୍ଡିରୁ ମୁଣ୍ଡ ବଳେବଳେ ତଳେ ଗଡ଼ିବ । ଆପଣ ମତେ ଟିକେ ସାହାଯ୍ୟ କରନ୍ତୁ ଦାମବାବୁ । (ବିକଳ ଭାବରେ)
ଦାମବାବୁ : (ଅଭୟ ଦେବାଭଙ୍ଗୀରେ) ଆପଣ ମୋତେ ବ୍ୟସ୍ତ ହୁଅନ୍ତୁ ନି, ସାର୍ । ଏ ଜିଲ୍ଲାରେ ଯେତେ ବ୍ଲକ୍ ଅଛି, ମୁଁ ପ୍ରଥମେ ସେତେଟ୍ରକ୍ ଶିଳ ମଗେଇ ଦେଇଚି । ଏ ବିପଦପୂର୍ଣ୍ଣ ପରିସ୍ଥିତିର, ସେଇଟା ହେଉଛି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ।
ବଡ଼ବାବୁ : କ'ଣ କହିଲେ ଖାଲି ଶିଳ ଆସିଯିବ ?
ଦାମବାବୁ : (ସ୍ୱପ୍ନ ଦେଖିବାପରେ) ହଁ, ଶିଳ । ପ୍ରଥମେ ଆସିଯିବ ଶିଳ । ସେଇ ଶିଳଗୁଡ଼ାକ ଗୋଟିଗୋଟି ହୋଇ ଚାଲିଯିବ, ସବୁ

ରିଲିଫ୍ କ୍ୟାମ୍ପକୁ ।

ବଡ଼ବାବୁ : ସେଇଠୁ....... ?

ଦାମବାବୁ : ସେଇ ଶିଳ ଯାଇ କ୍ୟାମ୍ପର ରୋଷେଇଘରେ ରଖାଯିବ ?

ବଡ଼ବାବୁ : ତା'ପରେ....... ?

ଦାମବାବୁ : ତା'ପରେ ଆରମ୍ଭ ହେବ ସ୍ୱାଦିଷ୍ଟ ଖାଦ୍ୟ ପ୍ରସ୍ତୁତିପାଇଁ ଯାହା ଆବଶ୍ୟକ, ସେଇ ମସଲାବଟା ।

ବଡ଼ବାବୁ : ତା'ପରେ....... ?

ଦାମବାବୁ : ତା'ପରେ ଆଉ କ'ଣ ? ଏମିତି ମସଲାବଟା ଚାଲିଥିବ, ସ୍ୱାଦିଷ୍ଟ ଖାଦ୍ୟ ପ୍ରସ୍ତୁତ ହେଉଥିବ । ରାଜ୍ୟ-ଶାସନ-ମୁଖ୍ୟ ତାଙ୍କୁ ଲୋକମାନଙ୍କୁ ମାନେ ଆଶ୍ରୟସ୍ଥଳରେ ଥିବା ଆଶ୍ରିତମାନଙ୍କୁ ପରଶୁଥିବେ । ଭିଡ଼ିଓ କ୍ୟାମେରାରେ ଫଟୋ ଉଠାଚାଲିଥିବ । ସାମ୍ବାଦିକମାନେ ପ୍ରଶ୍ନ ଉପରେ ପ୍ରଶ୍ନ ପଚାରି ଚାଲିଥିବେ । ଶାସନ-ମୁଖ୍ୟ ହସି ହସି ସବୁ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଉଥିବେ । ସାମ୍ବାଦିକମାନେ କିଛି ଭୁଲ ଖୋଜି ନପାରିବାର ସ୍ୱୀକାର କରି ଶାସନ-ମୁଖ୍ୟଙ୍କୁ ରିଲିଫ୍ କାର୍ଯ୍ୟ ସୁପରିଚାଳନା ପାଇଁ ଧନ୍ୟବାଦ ଦେବେ । ଆଉ ଶାସନମୁଖ୍ୟ କହିବେ, ସବୁଥିପାଇଁ ଧନ୍ୟବାଦର ଅଧିକାରୀ ହେଉଛନ୍ତି ସ୍ଥାନୀୟ ବଡ଼ହାକିମ । ହାକିମ କହିବେ, ନା, ନା, ମୁଁ ନୁହେଁ; ଏସବୁ ବିଡ଼ିଓଙ୍କର ପ୍ରାପ୍ୟ । ବିଡ଼ିଓ କହିବେ ମୋ ଅପେକ୍ଷା ବଡ଼ବାବୁ ଅଧିକ ପରିଶ୍ରମ କରି ଏହାକୁ ସୁଫଳ କରିଛନ୍ତି । ତେଣୁ ତାଙ୍କୁ ଧନ୍ୟବାଦ ଦିଅନ୍ତୁ । ଏହାଶୁଣି ଆପଣ ଖାଲି କୁରୁଳି କୁରୁଳି ହସିବେ ଆଉ ହସିବେ । ମୁଁ ଯେ ଶିଳ ମଗାଇଥିବାରୁ ଖାଦ୍ୟ ସ୍ୱାଦିଷ୍ଟ ହେଲା ଓ ସବୁ ଠିକ୍‌ଠିକ୍ ଚାଲିଲା ତାହା ଆପଣ ସମ୍ପୂର୍ଣ୍ଣ ଭୁଲିଯିବେ ।

ବଡ଼ବାବୁ : (ପ୍ରକୃତିସ୍ଥ ହୋଇ) ଖାଲି ଶିଳ ତ ଆସିଲେ, ହେବନି ? ଅନ୍ୟ ସବୁ ଜିନିଷ ତ ପୁଣି ଆସିବା ଦରକାର ।

ଦାମବାବୁ : (ଭାବବିହ୍ୱଳ ହୋଇ) ହଁ, ବଡ଼ବାବୁ ଆସିବ । ସବୁ ଆସିବ, ଶିଳ ପଛେପଛେ ଆସିବ ଚୁଡ଼ା ଟ୍ରକ, ତା'ପଛକୁ ଗୁଡ଼ଟ୍ରକ୍,

ଚାପଛକୁ ଚାଉଳ ଟ୍ରକ୍, ଚାପଛକୁ ଡ଼ାଲିଟ୍ରକ । ତା'ପଛେପଛେ ଆଉ ଆଉ ଜିନିଷର ଟ୍ରକ....... । ଏମିତି ଟ୍ରକର ଲମ୍ବାଧାଡ଼ିସବୁ ରିଲିଫ୍ କ୍ୟାମ୍ପ ଆଗରେ ଠିଆ ହେବ । ତା'ର ବି ଫଟୋ ଉଠାହେବ । (ବଡ଼ବାବୁଙ୍କୁ) ଆପଣ ହାତରେ କାଗଜ କଲମଧରି, ଜିନିଷମାନଙ୍କର ତାଲିକା କରୁଥିବେ..... ଆଉ ଭିଡ଼ିଓ କ୍ୟାମେରା ବାଲା ଟେଲିଭିଜନପାଇଁ ଆପଣଙ୍କ ଫଟୋ ଉଠାଇ ଚାଲିଥିବେ........ବାଃ....... ।

ଆଉ ଜଣେ ବଡ଼ବାବୁ : (ବ୍ୟସ୍ତଭାବରେ ପ୍ରବେଶ) ନଈବନ୍ଧଭାଙ୍ଗି ବନ୍ୟାଜଳ ଗାଁଭିତରେ ପଶିଗଲାଣି । ଚାଲନ୍ତୁ ଆମେସବୁ ଶୀଘ୍ରଶୀଘ୍ର ରିଲିଫ୍ କ୍ୟାମ୍ପକୁ ଚାଲିଯିବା । ଦାମବାବୁ ! ରିଲିଫ୍ ଜିନିଷ ଆଣୁଥିବା ଟ୍ରକ୍‌ସବୁ କୁଆଡ଼େ ଗଲା ?

ଦାମବାବୁ : ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ବଡ଼ବାବୁ । ଶିଳ ଟ୍ରକ ରିଲିଫ୍ କ୍ୟାମ୍ପପାଖରେ ପହଞ୍ଚିଗଲାଣି ।

ବଡ଼ବାବୁ : ଆଉ ଚୁଡ଼ା ଟ୍ରକ୍ ?

ଦାମବାବୁ : ଆସୁଛି ।

ଅନ୍ୟଜଣେ ବଡ଼ବାବୁ : ଗୋ ଖାଦ୍ୟ ଟ୍ରକ ?

ଦାମବାବୁ : ଆସୁଛି ।

ଅନ୍ୟ ଜଣେ ବଡ଼ବାବୁ : ଲୁଣ, ଦିଆସିଲ, ଆଉ ମହମବତୀ ଟ୍ରକ ?

ଦାମବାବୁ : ଆସୁଛି ।

ଅନ୍ୟ ଜଣେ ବଡ଼ବାବୁ : ଚାଉଳ ଟ୍ରକ ?

ଦାମବାବୁ : ଆସୁଛି ।

ବଡ଼ବାବୁ ମାନେ : (ବିରକ୍ତ ହୋଇ ସମସ୍ୱରରେ) କେଉଁଠି ଆସୁଛି ?

ସୁଦାମବାବୁ : (ଦ୍ରୁତଗତିରେ ପ୍ରବେଶ କରି ସୁବଳବାବୁଙ୍କ ସହିତ) ଭୀଷଣ ବିପଦ ପଡ଼ିଗଲା ।

ସୁବଳବାବୁ : ଆମେ ଅଳ୍ପକେ ବଞ୍ଚିଗଲୁ ।

ଦାମବାବୁ : କ'ଣ ହେଲା । ଟ୍ରକସବୁ ଆସିଗଲା ତ ?

ସୁବଳବାବୁ : ସେଇ କଥାତ କହୁଛି, ଟିକେ ମନଦେଇ ଧୈର୍ଯ୍ୟଧରି ଶୁଣ ।

ଦାମବାବୁ : ଆରେ ଶୀଘ୍ର ଶୀଘ୍ର କୁହ ।

ସୁବଳବାବୁ : ଶିଳ ଟ୍ରକ ନଈବନ୍ଧରେ ପାର ହେଇଗଲା ପରେ ଚୁଡ଼ା, ଚାଉଳ, ଗୁଡ଼, ଦିଆସିଲ, ମହମବତୀ ଆଉ ଲୁଣ ବୋଝେଇ ଟ୍ରକ ନଈବନ୍ଧରେ ତା'ପଛକୁ ଆସୁଥିଲା । ହଠାତ୍ ବନ୍ୟାପାଣିର ଗୋଟେ ହାବୁକା ଆସି ବନ୍ଧକୁ ଭାଙ୍ଗିଦେଲା ।

ଦାମବାବୁ : (ଅତ୍ୟନ୍ତ ହତାସ ସ୍ୱରରେ) ସେଇଠୁ ?

ସୁବଳବାବୁ : (କାନ୍ଦିଉଠି) ବନ୍ୟାପାଣି ସବୁ ଟ୍ରକ୍‌କୁ ଭସେଇ ନେଲା ।

ସୁଦାମବାବୁ : (କାନ୍ଦିକାନ୍ଦି) ଡ୍ରାଇଭର, ହେଲପର, କୁଲିମାନେ ସବୁ ଭାସିଗଲେ ।

ସୁବଳବାବୁ : ବନ୍ୟାର ଅବସ୍ଥା ଯାହା, ଲୋକଗୁଡ଼ାକ ନିଶ୍ଚୟ ମରି ଯାଇଥିବେ ।

ଦାମବାବୁ : (ହତାଶ ଭାବରେ) ତାଙ୍କ ସାଙ୍ଗରେ ରିଲିଫ୍ ଜିନିଷତ ପୁରା ଭାସିଯାଇଥିବ ?

ସୁଦାମବାବୁ : (କାନ୍ଦକାନ୍ଦ ଭାବରେ) ହଁ, ଆଉ କେହି ନାହାନ୍ତି, କିଛିନାହିଁ ।

ବଡ଼ବାବୁ : (ଅସହାୟ ସ୍ୱରରେ) ତେବେ, ବର୍ତ୍ତମାନ ଉପାୟ ?

ଦାମବାବୁ : (କିଛି କ୍ଷଣି ଭାବି) ଉପାୟ ଅଛି । ଅଳ୍ପସମୟ ମଧ୍ୟରେ ଏନ୍.ଜି.ଓ. ବାଲା ଆସି ରିଲିଫ୍ କାମରେ ଲାଗିଯିବେ ।

ବଡ଼ବାବୁ : ଆମ କଥା କ'ଣ ହେବ ?

ଦାମବାବୁ : ଆମେ ସବୁ, ସେମାନଙ୍କୁ ଆମ ରିଲିଫ୍ କ୍ୟାମ୍ପକୁ ନେଇଯିବା ।

ବଡ଼ବାବୁ : ତା'ପରେ ?

ଦାମବାବୁ : ସେମାନଙ୍କ ଜିନିଷପତ୍ର ଆଗଭର ହୋଇ ଆମେ ବଣ୍ଟାକୁଣ୍ଟା କରିବାକୁ ଆରମ୍ଭ କରିଦେବା

ବଡ଼ବାବୁ : ଏନ୍.ଜି.ଓ ବାଲା ସେଥିରେ କ'ଣ ରାଜିହେବେ ?

ଦାମବାବୁ : ସେମାନଙ୍କ ରିଲିଫ୍ ସାମଗ୍ରୀର ଓ ସୁଷମ ବଣ୍ଟନପାଇଁ ଏହା ଉପରୁ ନିର୍ଦ୍ଦେଶ ଆସିଛି ବୋଲି ସେମାନଙ୍କୁ କହି ଭୁଚେଇବାକୁ ଚେଷ୍ଟା କରିବା ଏବଂ ସେମାନେ କିଛି ନିଷ୍ପତ୍ତି ନେବା ଆଗରୁ ଆମେ ବଣ୍ଟନ କାର୍ଯ୍ୟ ଆରମ୍ଭ କରିଦେବା । ସେମାନେ ଆପତ୍ତି କଲେ ଅପ୍ରିୟ ହେବେ ଭାବି ନିରବ ରହିଯିବେ । ସେମାନଙ୍କ ରିଲିଫ୍‌ରେ ଲୋକେ ଚଳିଯିବେ ।

ଅନ୍ୟ ବଡ଼ବାବୁ : ଏନ୍.ଜି.ଓ ବାଲାଙ୍କ ଅଳ୍ପ ରିଲିଫ୍‌ରେ , ଆମେ କ'ଣ ସମସ୍ତଙ୍କୁ ସନ୍ତୁଷ୍ଟ କରିପାରିବା ?

ଦାମବାବୁ : ଯେତେହେଲେ ବି ଲୋକେ କ'ଣ ସନ୍ତୁଷ୍ଟ ହୁଅନ୍ତି ? ଆମେ ଯଥେଷ୍ଟ ରିଲିଫ୍ ଦେଲୁବୋଲି କାଗଜପତ୍ରରେ ଦର୍ଶାଇବା । ଯିଏ ଆପତ୍ତି କରିବ, ତା'ପାଟି ବନ୍ଦ କରିବାକୁ ଚେଷ୍ଟାକରିବା । ନହେଲେ ତାକୁ ମିଥ୍ୟାବାଦୀ ବା ବିରୋଧିଦଳ ଲୋକ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିବା । ଯାପରେ ଆଉ ଜିନିଷ ମଗେଇ, ପୁଣି ଆଉଥରେ କାମରେ ଲାଗିଯିବା ।

ବଡ଼ବାବୁ : ତା'ହେଲେ, ଏସବୁ ଭାସିଯାଇଥିବା ଜିନିଷର ହିସାବ ଏବଂ ଗାଡ଼ି ସହିତ ସେ ଲୋକମାନଙ୍କ ବିଷୟରେ କ'ଣ ହେବ ?

ଦାମବାବୁ : ଆପଣମାନେ ସେଥିପାଇଁ ମୋଟେ ବ୍ୟସ୍ତ ହୁଅନ୍ତୁ ନାହିଁ, ସାର୍ ! ସେ ସବୁକଥା ମୁଁ ସମ୍ଭାଳିନେବି । ଆଉ ସେଥିପାଇଁ ଆପଣମାନେ ଉପଯୁକ୍ତ ନଇବଢ଼ିର ଉପକାରିତା ପାଇବେ । ବନ୍ୟାଚାଲିଗଲାପରେ ନଇବଢ଼ିର ଉପକାରିତା ଆପଣମାନେ ଖୁବ୍ ଭଲଭାବରେ ଉପଲବ୍ଧି କରିପାରିବେ । ଆପଣଙ୍କ ଘରର ରୂପ ବଦଳି ଯିବ । ଗାଡ଼ି ବଦଳିଯିବ, ମାଡ଼ାମ୍‌ଙ୍କ ଗହଣା ବଦଳିଯିବ । ପିଲାଙ୍କର ପୋଷାକପତ୍ର ବଦଳିଯିବ, ଆଉ ଆପଣଙ୍କର ବ୍ୟାଙ୍କ୍ ଏକାଉଣ୍ଟର ଅଙ୍କ ବି ବଦଳିଯିବ । ଖାଲି ସେତିକି ନୁହେଁ, ଆପଣଙ୍କ ପରିବାରର ସବୁଲୋକ, ଠାକୁର ମନ୍ଦିରକୁ ଯାଇଁ, ପ୍ରତିବର୍ଷ ଏହିପରି ବନ୍ୟା, ବାତ୍ୟା, ମରୁଡ଼ି, ଭୂମିକମ୍ପ ପ୍ରଭୃତି ପ୍ରାକୃତିକ ଦୁର୍ବିପାକ ଆମ ଏ ଅଞ୍ଚଳକୁ ଶୁଭ ଦୃଷ୍ଟିରେ ଦେଖୁଥାଉ ବୋଲି ପ୍ରାର୍ଥନା କରିବେ...... କରୁଥିବେ । ଅନୁପମା ଦେବୀଙ୍କ ପରି ସମାଜସେବୀମାନେ, ଆସ୍ତେଆସ୍ତେ ସେବିକାରୁ ଚେୟାର ପର୍‌ସନ୍, ସେଥିରୁ ଏମ୍.ଏଲ୍.ଏ ବା ଏମ୍.ପି., ସେଥିରୁ ରାଜ୍ୟ ବା କେନ୍ଦ୍ରମନ୍ତ୍ରୀ ହୋଇଯିବେ । ସୁଦାମ, ସୁବଳ ଆଉ ମୋପରି ସମାଜସେବିମାନେ ଏହିପରି ଆଜୀବନ ଏବଂ ପୁତ୍ର ପୌତ୍ରାଦାକ୍ରମେ ସମାଜସେବା କରି ଚାଲିଥିବେ ।

# ଜୀବନ ଯନ୍ତ୍ରଣା

ଟାଉନ୍‌ଥାନା । ସମୟ ଭୋର ଚାରିଟା । ରାତ୍ରି ଗସ୍ତରେ ସହର ମଧ୍ୟରେ ବୁଲୁଥିବା କନେଷ୍ଟବଳ ଇବ୍ରାହାମ୍ ଗୋଟିଏ ଯୁବକ ସହିତ ଥାନା ମଧ୍ୟରେ ପ୍ରବେଶ କଲେ । ସେତେବେଳକୁ ଥାନା ଭିତରର ଆଲୋକ ନିଷ୍ପ୍ରଭ ଥିଲା । ଥାନାର ବାହାର ବାରଣ୍ଡାରେ ଥିବା ବେଞ୍ଚ୍ ଉପରେ ଅଧାବସା ଅଧାଶୁଆ ଅବସ୍ଥାରେ ଘୁଙ୍ଗୁଡ଼ି ମାରୁଥିଲା ସେଣ୍ଟ୍ରି କନେଷ୍ଟବଳ ବନା । ଅନ୍ୟ ଏକ ପ୍ରକୋଷ୍ଠରେ ଶୋଇଥିଲେ ସବ୍‌ଇନ୍‌ସପେକ୍ଟର୍ ବିଚିତ୍ରାନନ୍ଦ ରାୟ । ଇବ୍ରାହିମ୍‌ର ଡାକରେ ନିଦରୁ ଉଠିଆସିଲେ ଶ୍ରୀ ରାୟ ଏବଂ ନିଜ ଆସନରେ ଉପବେସନ କଲେ । ଅର୍ଦ୍ଧ ନୀମିଳିତ ନେତ୍ରରେ ସେ ଇବ୍ରାହୀମ୍ ଓ ତା' ସହିତ ଥିବା ଯୁବକକୁ ଲକ୍ଷ୍ୟକରି ପଚାରିଲେ-

ବିଚିତ୍ରାନନ୍ଦ : ତୁମର କେଉଁ ଅଂଚଳରେ ରାତି ଡ୍ୟୁଟି ଥିଲା ଇବ୍ରାହୀମ୍ ? ଏ ଯୁବକ ବାବୁଟି କିଏ ?

ଇବ୍ରାହୀମ୍ : ମୋର ଆଜି ଗୋରାକବର ଅଂଚଳରେ ଡ୍ୟୁଟି ଥିଲା ସାର୍ । ରାତି ତିନିଟାବେଳେ ମୁଁ ଗୋରାକବର ଭିତରେ ପଶି ଦେଖେ ତ, ଏ ଲୋକଟି ଗୋଟିଏ କବର ଆଢୁଆଳରେ ଶୋଇଛି । ମୁଁ ପ୍ରଥମେ ଟିକେ ଡରିଯାଇଥିଲି । ଅଳ୍ପ ସମୟ ଅପେକ୍ଷା କରି ଏ ବାବୁଙ୍କ ପାଖକୁ ଗଲି । ତାକୁ କିଛି ସମୟ ଲକ୍ଷ୍ୟକଲା ପରେ ନିଦରୁ ଉଠାଇଲି । ପଚରା ଉଚୁରା କଲାରୁ ଇଏ ମତେ କିଛି କହିଲେ ନାହିଁ । ମୋ ମନରେ ସନ୍ଦେହ ହେଲା, ଇଏ କାଳେ ଛାମି ଭୋଇ ଗ୍ୟାଙ୍ଗର ଲୋକ କି କେଉଁ ଚୋର ଦଳର ଲୋକ ହେଇଥିବ ଭାବି ଥାନାକୁ ନେଇ ଆସିଲି ।

ବିଚିତ୍ରାନନ୍ଦ : ଭଲକଲ, ଭଲକଲ । ହଇହୋ ବାବୁ ! ତୁମ ନାମ କ'ଣ ?

ଯତୀନ୍ଦ୍ର : ଯତୀନ୍ଦ୍ର ମୋହନ ଦାସ ।

ବିଚିତ୍ରାନନ୍ଦ : ବାପାଙ୍କ ନାମ ?

ଯତୀନ୍ଦ୍ର : ଅନିରୁଦ୍ଧ ଦାସ ।

ବିଚିତ୍ରାନନ୍ଦ : ଘର... ?

ଯତୀନ୍ଦ୍ର : ନୂଆବଜାର ।

ବିଚିତ୍ରାନନ୍ଦ : (ଈଷତ ରୁକ୍ଷ କଣ୍ଠରେ) ଗୋରାକବରରେ କ'ଣ କରୁଥିଲ ?

ଯତୀନ୍ଦ୍ର : ଶୋଇଥିଲି ।

ବିଚିତ୍ରାନନ୍ଦ : ନୂଆବଜାରରୁ ଗୋରାକବର ପର୍ଯ୍ୟନ୍ତ ତୁମେ କ'ଣ ଶୋଇବାକୁ ଆସିଥିଲ ? ନା, ଆଉ କିଛି ମତ୍‌ଲବ୍‌ରେ... ?

ଯତୀନ୍ଦ୍ର : ମୁଁ ଶୋଇବାକୁ ଆସି ନଥିଲି କି ମୋର ଅନ୍ୟ କିଛି ମତ୍‌ଲବ୍ ନଥିଲା, ସାର୍ ।

ବିଚିତ୍ରାନନ୍ଦ : ତୁମେ ନିଶ୍ଚୟ ଚୋରି କରିବାକୁ ଆସିଥିଲ । ତୁମ ଦଳର ଅନ୍ୟମାନଙ୍କୁ ଅପେକ୍ଷା କରି କରି ସେମାନେ ନ ଆସିବାରୁ ତୁମେ ଶୋଇପଡ଼ିଲ ।

ଯତୀନ୍ଦ୍ର : ମୁଁ ଚୋର ନୁହେଁ ସାର୍ !

ବିଚିତ୍ରାନନ୍ଦ : ଆଉ କ'ଣ ସାଧୁ ମହାପୁରୁଷ ? ସତ ସତ କୁହ ଆଉସବୁ କିଏ ତୁମ ଦଳରେ ଅଛନ୍ତି ? ରାତିରେ କେଉଁଠିକୁ ଚୋରି କରିବାକୁ ଯିବାକୁ ପ୍ରସ୍ତାବ ଥିଲା ?

ଯତୀନ୍ଦ୍ର : ଆପଣ ମତେ ବିଶ୍ୱାସ କରନ୍ତୁ ସାର୍ ! ମୁଁ ଚୋର ନୁହେଁ । ଚେଷ୍ଟା କଲେ ବି ଚୋରି କରିପାରିବିନି ।

ବିଚିତ୍ରାନନ୍ଦ : (ଅପେକ୍ଷାକୃତ ଉଚ୍ଚ ଗଳାରେ ଧମକ ସହିତ) ତୁମେ ନିଶ୍ଚୟ ଚୋର ଏବଂ ମୁଁ ତୁମକୁ ବର୍ତ୍ତମାନ ହାଜତ୍‌ରେ ପୂରେଇ ଦେବି ।

ଯତୀନ୍ଦ୍ର : (ଅତ୍ୟନ୍ତ ବିକଳ ଭାବରେ) ତା' କରନ୍ତୁ ନାହିଁ ସାର୍ ! ସେ କଥା ହେଲେ ମୋର ଉଜ୍ଜ୍ୱଳ ଭବିଷ୍ୟତ, ଏତେ ଶିକ୍ଷାଦୀକ୍ଷା ସବୁ ପାଣିରେ ମିଶିଯିବ । ମୋ ରୋଗୀଣା ମା' ହାର୍ଟଫେଲ୍ କରି ମରିଯିବ ।

ବିଚିତ୍ରାନନ୍ଦ : କେତେଦୂର ପଢ଼ିଛ ?

ଯତୀନ୍ଦ୍ର : ଏମ୍.ଏ. ।

ବିଚିତ୍ରାନନ୍ଦ : ଏମ୍.ଏ. ? କିଛି ଚାକିରି-ବାକିରି ?

ଯତୀନ୍ଦ୍ର : ନାଇଁ ସାର୍ ।

ବିଚିତ୍ରାନନ୍ଦ : ତେବେ ଏତେ ରାତିରେ ସେଠାକୁ କାହିଁକି ଯାଇଥିଲ କୁହ ? ନଚେତ୍ ମୁଁ ତୁମକୁ ଆରେଷ୍ଟ କରିବି ।

ଯତୀନ୍ଦ୍ର : ଆପଣ ତା'ହେଲେ ମତେ ଟିକେ ସମୟ ଦେଇ ପାରିବେ ସାର୍ ? ମୁଁ

ମୋର ଅତୀତ ଜୀବନକୁ ଆପଣଙ୍କ ପାଖରେ ଉପସ୍ଥାପିତ କରିବି । ତେଣିକି ଆପଣଙ୍କ ଖୁସି ।

ବିଚିତ୍ରାନନ୍ଦ : ଆଚ୍ଛା ଇବ୍ରାହିମ ! ତୁମେ ଟିକେ ବାହାରେ ଅପେକ୍ଷା କର । (ଇବ୍ରାହୀମ୍ ସାଲ୍ୟୁଟ୍ କରି ଚାଲିଯିବା ପରେ ଯୁବକକୁ) ହଁ, ତୁମ କଥା ଆରମ୍ଭକର ।

ଯତୀନ୍ଦ୍ର : (କୃତଜ୍ଞତା ସହ) ଧନ୍ୟବାଦ ସାର୍ ! ଶୁଣନ୍ତୁ । ମୁଁ ସେତେବେଳେ ୟୁନିଭର୍ସିଟିର ଷଷ୍ଠ ବର୍ଷର ଛାତ୍ର । ଦିନେ ସଂଧ୍ୟା ପୂର୍ବରୁ କଲେଜ୍‌ରୁ ଘରକୁ ଫେରୁଥାଏ । ହଠାତ୍ ମୋ ଆଖି ସାମନାରେ ଗୋଟେ ମୋଟର୍ ଦୁର୍ଘଟଣା ଘଟିଗଲା ।

ବିଚିତ୍ରାନନ୍ଦ : କେଉଁଠି ?

ଯତୀନ୍ଦ୍ର : ଆମ ଘରଠାରୁ କିଛି ଦୂରରେ ଜଣେ ପଞ୍ଜାବୀ ଭଦ୍ରଲୋକ କାର୍ ଚଳାଇ ଯାଉଥିବା ସମୟରେ ଗୋଟିଏ ଛୋଟପିଲା ଦେହରେ ଧକ୍କା ଲଗାଇଦେଲେ । ଭୁଲ୍ ଅବଶ୍ୟ ସମ୍ପୂର୍ଣ୍ଣ ରୂପେ ପିଲାର ।

ବିଚିତ୍ରାନନ୍ଦ : ପିଲାର କ'ଣ ହେଲା ?

ଯତୀନ୍ଦ୍ର : ତା'ର କୌଣସି କ୍ଷତି ହୋଇ ନଥିଲା । ମାତ୍ର ଆଖପାଖ ଦୋକାନୀ ଓ ଦେଖଣାହାରୀମାନେ ସର୍ଦ୍ଦାର୍‌ଜୀଙ୍କ ଉପରେ ଜୁଲମ କରିବାକୁ ମାଡ଼ିଆସିଲେ ।

ବିଚିତ୍ରାନନ୍ଦ : ତା'ପରେ ?

ଯତୀନ୍ଦ୍ର : ଏକଥା ଦେଖି ମୁଁ ସେମାନଙ୍କ ଭିତରେ ପଶି ପରିସ୍ଥିତିକୁ ସମ୍ଭାଳିନେଲି । ଆସ୍ତେ ଆସ୍ତେ ଲୋକଭିଡ଼ ଭାଙ୍ଗିଗଲା । ତା'ପରେ ମୁଁ ମୋର ଘରମୁହାଁ ରାସ୍ତା ଧରିଲି ।

ବିଚିତ୍ରାନନ୍ଦ : ସେଇଠୁ ?

ଯତୀନ୍ଦ୍ର : ସର୍ଦ୍ଦାର୍‌ଜୀ କୃତଜ୍ଞତାରେ ବ୍ୟଗ୍ର ହୋଇ ମୋ ଘର ଠିକଣା ପଚାରିଲେ । ମୁଁ ତାଙ୍କ ଘରଠାରୁ ଅଳ୍ପଦୂରରେ ଗୋଟିଏ ଭଡ଼ାଘରେ ରହୁଥିଲି । ମୁଁ ତାଙ୍କୁ ଚିହ୍ନିଥିଲେ ବି ସେ ମୋତେ ଚିହ୍ନି ନଥିଲେ ।

ବିଚିତ୍ରାନନ୍ଦ : ତା'ପରେ ?

ଯତୀନ୍ଦ୍ର : ମୋର ପରିଚୟ ପାଇବାମାତ୍ରେ ସେ ଖୁସିରେ ମତେ ମଟର କାର୍‌ରେ ବସାଇ ତାଙ୍କ ଘରକୁ ଘେନିଗଲେ । ତାଙ୍କ ଘରେ ... (ଆଲୋକ ପରିବର୍ତ୍ତନ ସହିତ ଦୃଶ୍ୟ ପରିବର୍ତ୍ତନ ହେଲା । ସର୍ଦ୍ଦାରଜୀଙ୍କ ଘରର

ଡ୍ରଇଂରୁମ୍ ଦାମିକା ସୋଫା, ରଙ୍ଗିନ୍ ଟି.ଭି. ଓ ଅନ୍ୟାନ୍ୟ ଆଭିଜାତ୍ୟପୂର୍ଣ୍ଣ ସାଜସଜ୍ଜାରେ ପ୍ରକୋଷ୍ଠଟି ସତେ ଯେମିତି ପ୍ରାଣବନ୍ତ ।)

ସର୍ଦ୍ଦାରଜୀ : ବସ ବାବୁ ବସ । କ'ଣ କହି ମୁଁ ତୁମକୁ କୃତଜ୍ଞତା ଜଣାଇବି ମୁଁ ଜଣିପାରୁନି ଏବଂ ସେଥିପାଇଁ ଯଥେଷ୍ଟ ଭାଷା ଖୋଜି ପାଉନି । ତୁମେ ଆଜି ସେଠି ନଥିଲେ ମୋର ଯେ କ'ଣ ହେଇଥାନ୍ତା ତାହା ମଧ ମୁଁ ଭାବିପାରୁନି । ବାସ୍ତବିକ ତୁମର ଉପକାର ମୁଁ କେବେହେଲେ ପରିଶୋଧ କରିପାରିବିନି ।

ଯତୀନ୍ଦ୍ର : (ବିନମ୍ରତାର ସହିତ) ମୁଁ ମୋର କର୍ତ୍ତବ୍ୟ ମାତ୍ର କରିଛି । ଅଧିକ ତ କିଛି କରିନି ?

ଉଷା : (ଆଧୁନିକା ଯୁବତୀ) ତୁମେ ଏତେବେଳ ଯାଏ କେଉଁଠିଥିଲ ବାପା ?

ସର୍ଦ୍ଦାରଜୀ : ସେ କଥା ଟିକେ ପରେ ଶୁଣିବୁ । ତୁ ଏ ବାବୁଙ୍କୁ ଚିହ୍ନିଛୁ ?

ଉଷା : ନା ।

ସର୍ଦ୍ଦାରଜୀ : ଛଏ ଆମ ପାଟେରୀ ଆରପଟ ଘରେ ଅଛନ୍ତି । 6th yearରେ ପଢୁଛନ୍ତି । ବୁଝିଲୁ ମା ! ଇଏ ଯଦି ଆଜି ନଥାନ୍ତେ, ତେବେ ପ୍ରାୟ ୩୦୦/୪୦୦ ଲୋକଙ୍କ ହାତରେ ମୋ ପ୍ରାଣଟା ଆଜି ଚାଲିଯାଇ ଥା'ନ୍ତା ।

ଉଷା : ମାନେ... କ'ଣ ହେଲା... ?

ସର୍ଦ୍ଦାରଜୀ : କ'ଣ କହିବି ମା ? ମୋର କିଛି ଦୋଷ ନାହିଁ । ମୁଁ ଗାଡ଼ି ଚଳାଉଛି । ରାସ୍ତା ପ୍ରାୟ ଫାଙ୍କା । ଦୋଳମୁଣ୍ଡେଇ ଛକ ପାଖରେ ହଠାତ୍ ସାନ ପିଲାଟିଏ ରାସ୍ତା ଉପରକୁ ଦଉଡ଼ି ଆସିଲା । ଗାଡ଼ି କଟେଇ ନେଇ ଯିବାକୁ ସୁବିଧା ନାହିଁ ଦେଖି ମୁଁ ଜୀବନ ବିକଳରେ ଆଖିବୁଜି ବ୍ରେକ୍ ଦେଲି । ଗାଡ଼ିଟା ହଠାତ୍ ଠିଆ ହୋଇଗଲା ଏବଂ ପିଲାଟା ସିଧା ଆସି ଗାଡ଼ିରେ ଧକ୍କାଖାଇ ତଳେ ପଡ଼ିଗଲା ।

ଉଷା : ପିଲାଟାର କିଛି ହେଇନି ତ ?

ଯତୀନ୍ଦ୍ର : ସେ ତ ରକ୍ଷା ହେଇଚି ।

ସର୍ଦ୍ଦାରଜୀ : ଓହୋ ! ଅସଲ କଥାଟା ଶୁଣନ୍ତୁ ?

ଉଷା : କ'ଣ ?

ସର୍ଦ୍ଦାରଜୀ : ତା' ପରେ ମାଡ଼ିଆସିଲେ ଲୋକ । ପ୍ରଥମେ ପ୍ରାୟ ଦଶଜଣ । ତା'ପରେ ଦଶରୁ ପଚାଶ । ପଚାଶରୁ ଶହେ- ଶହେରୁ ଦୁଇଶହ ତା'ପରେ ଚାରିଶହ— ସମସ୍ତେ ପ୍ରାୟ ଉତ୍ତ୍ୟକ୍ତ । କହୁଥାଆନ୍ତି, ଶଳା ଗାଡ଼ି ଚଢୁଛନ୍ତି

ବୋଲି ମଣିଷ ମାନୁନାହାନ୍ତି । ଶଳାକୁ ଟାଣିଆଣ । ମୁଣ୍ଡକୁ ଦିଫାଳ କରିଦିଅ । ଶଳାକୁ ପିଟି ପିଟି ନାଳରେ ପକେଇଦିଅ ।

ଉଷା : (ଭୟଙ୍କର ଭାବରେ ଡରିଯାଇ) ସେଇଠୁ ?

ସର୍ଦ୍ଦାରଜୀ : ମୁଁ ଖାଲି ଗାଡ଼ି ଭିତରେ ବସି ବରଡ଼ାପତ୍ର ପରି ଥରୁଥାଏ ।

ଉଷା : ତା'ପରେ ?

ସର୍ଦ୍ଦାରଜୀ : ତା'ପରେ ଏଇ ବାବୁ ଦେବଦୂତ ପରି ଆସି ସେଠାରେ ପହଞ୍ଚିଗଲେ । ମୋ'ଠୁ ସବୁକଥା ଶୁଣି ସିଏ ଲୋକମାନଙ୍କୁ ବୁଝାଇବାକୁ ଚେଷ୍ଟାକଲେ । ମାତ୍ର କେଇଜଣ ଲୋକ ତାଙ୍କୁ ବି ଗାଳି ଗୁଲଜ କରିବାକୁ ଆରମ୍ଭ କରିଥିଲେ । ମାତ୍ର ଇଏ ସେ ସବୁକୁ ଭ୍ରୂକ୍ଷେପ ନକରି ସମସ୍ତଙ୍କୁ ବୁଝେଇ ଶୁଝେଇ ସେଠାରୁ ବିଦା କଲେ । ପିଲାର ଭୁଲପାଇଁ ଏକ ବଡ଼ଧରଣର ଦୁର୍ଘଟଣା ଘଟିବାକୁ ଯାଉଥିଲା ଓ ପ୍ରାଣମୂର୍ଚ୍ଛା ଉଦ୍ୟମକରି ମୁଁ ପିଲାର ପ୍ରାଣ ବଂଚେଇଛି ବୋଲି କହିବାରୁ କିଛି ପ୍ରତ୍ୟକ୍ଷଦର୍ଶୀ ମଧ୍ୟ ଯାଙ୍କ କଥାରେ ଏକମତ ହେଲେ— ଆଉ ମୁଁ ଅକ୍ଷତ ଅବସ୍ଥାରେ ସେ ଦୁର୍ଯୋଗରୁ ତ୍ରାହି ପାଇଗଲି ।

ଉଷା : (ଭାବାବେଗରେ ଗଦ୍ ଗଦ୍ ହୋଇ) ମୁଁ ଯେ ଆପଣଙ୍କୁ କେମିତି ଧନ୍ୟବାଦ ଦେବି ଜାଣିପାରୁନି ।

ଯତୀନ୍ଦ୍ର : ଧନ୍ୟବାଦ କହିଁକି ? ଅନ୍ୟକୁ ବିପଦ ବେଳେ ସାହାଯ୍ୟ କରିବା ତ ମଣିଷର ଧର୍ମ । ଆଉ ସେତିକି ମାତ୍ର ମୁଁ କରିଛି ।

ଉଷା : ସମସ୍ତେ କ'ଣ ଆପଣଙ୍କ ପରି ଧର୍ମ ପାଳନ କରୁଛନ୍ତି ? ଯେ ନିଶ୍ଚୟ ଆପଣଙ୍କର ବଦାନ୍ୟତା । ପ୍ରକୃତରେ ମୋ ବାପାଙ୍କୁ ଏତେବଡ଼ ବିପଦରୁ ଆପଣ ରକ୍ଷା କରିଥିବାରୁ ମୁଁ ଆପଣଙ୍କ ନିକଟରେ କୃତଜ୍ଞ ।

ଯତୀନ୍ଦ୍ର : ନା, ନା, ଆପଣ ସେମିତି କହି ମୋତେ ଲଜ୍ଜିତ କରନ୍ତୁ ନାହିଁ ।

ସର୍ଦ୍ଦାରଜୀ : No, no my boy, atleast you gave us a chance to serve you. Oh Usha... be quick । ଚା', କଫି, କୋଲ୍ଡ୍ ଡ୍ରିଙ୍କ୍ anything । ଯା- ଏ ବାବୁଙ୍କ ପାଇଁ... ଆରେ ନା, ନା, ବାବୁ କ'ଣ ? ତୁମେ ତ ମୋର ପୁଅ ବୟସର... ତୁମ ନାଁ... ?

ଯତୀନ୍ଦ୍ର : ଯତୀନ୍ଦ୍ର କୁମାର ଦାସ ।

ସର୍ଦ୍ଦାରଜୀ : Goóď. ଯା, ମା' । ଯତୀନ୍ଦ୍ରକୁ ଆଜି ଆମ ଘରେ ପେଟପୂରା ଖୁଆ ।

କେବଳ ଆଜି ନୁହେଁ, ଯେଉଁଦିନ ଯେତେବେଳେ ଆସିବେ — ମୁଁ ଥାଏ କି ନଥାଏ- (ହସି) ଉଁ, କ'ଣ କହୁଛ young man ? (ସର୍ଦ୍ଦାରଜୀ ଓ ଉଷା ହସିଉଠିଲେ ।)

ଯତୀନ୍ଦ୍ର : କ୍ଷମା କରିବେ । ଏତେଟା ସମ୍ମାନର ଯୋଗ୍ୟ ମୁଁ ନୁହେଁ । କାହିଁକି ଯେ ଆପଣମାନେ... ?

ସର୍ଦ୍ଦାରଜୀ : No, my boy... I cannot express... ନା । ତୁମେ ଏଘରକୁ ମଝିରେ ମଝିରେ ଆସିବ, ନିଶ୍ଚୟ ଆସିବ । ତା'ଛଡ଼ା ଉଷା ଏ ଘରେ ଏକୁଟିଆ । ତୁମେ ଆସିଲେ ସେ ନିଶ୍ଚୟ ଖୁସି ହେବ । ଅନ୍ତତଃ ବୋର ହେବନି ।

ଯତୀନ୍ଦ୍ର : ଚେଷ୍ଟା କରିବି ... ।

ସର୍ଦ୍ଦାରଜୀ : ନା, ନା । ଚେଷ୍ଟା ନୁହେଁ, ତୁମେ ପ୍ରତିଦିନ ଆସିବାକୁ କଥା ଦିଅ । Daily... Ok... ନା, କଣ କୁହୁନ୍ତୁ ମା' ?

ଉଷା : ହଁ, ବାପା ।

ସର୍ଦ୍ଦାରଜୀ : ତୁମେ ବୁଝିପାରିବନି ଯତୀନ୍— ମାଆ ଚାଲିଗଲାପରେ ଉଷା ହୋଇଯାଇଛି ଏ ଘରେ ପୂରାପୂରି ଏକୁଟିଆ । ତାକୁ ସବୁବେଳେ ଖୁସିରେ ରଖିବାପାଇଁ ମୁଁ କୌଣସି କାମରେ କେବେହେଲେ ଅବହେଳା କରିନି । ମୁଁ ଜାଣେ- ତୁମକୁ ଦେଖି ସେ ଖୁବ୍ ଖୁସି । ଅନ୍ତତଃ ତା'ର ସେଇ ଖୁସି ଭାଙ୍ଗିବାକୁ ମୁଁ କେବେହେଲେ ଚାହିଁବିନି । Do you understand ? ଆସ ବଗିଚାଆଡ଼େ ଯିବା —

(ଅନ୍ୟଦୃଶ୍ୟ, ସମୟ ସଂଧ୍ୟା । ସର୍ଦ୍ଦାରଜୀଙ୍କ ବୈଠକଖାନା, ଉଷା ବୈଠକଖାନାରେ ବସି ଖଣ୍ଡିଏ ପତ୍ରିକା ଓଲଟାଉଥିଲା । ଟେଲିଭିଜନ୍‌ରୁ କୌଣସି ଏକ ପରିଚିତ ଜନପ୍ରିୟ ଗୀତର ଝଂକାର ଭାସି ଆସୁଥିଲା । ତାହା ବୋଧହୁଏ ଥିଲା ଏକାକୀତ୍ୱର ମୂର୍ଚ୍ଛନା । ତେଣୁ ଉଷା ଗିମ୍ଭୀର ଭାବରେ ସେଇ ସ୍ୱର ପ୍ରତି ଆକୃଷ୍ଟ । ହଠାତ୍ ବାହାର୍ରୁ କଲିଙ୍ଗବେଲ୍ ବାଜିବାର ଶବ୍ଦ । ଉଷା ଟିକେ ବିବ୍ରତ ବୋଧ କଲା । ଘଡ଼ିକୁ ଚାହିଁ ଦେଖିଲା ସାତଟା । ବାପାଙ୍କ ଆସିବା ବେଳ ତ ରାତି ଦଶଟା ପୂର୍ବରୁ ନୁହେଁ । ତେବେ କାହାର ଏ ଆଗମନ । ଲୁଗାପଟା ଠିକ୍ କରିନେଇ ଉଷା ଉଠିଗଲା କବାଟ ଖୋଲିବାକୁ । କବାଟ ଖୋଲି ସେ ଦେଖିଲା ବାହାରେ ଯତୀନ୍ । ଆନନ୍ଦରେ ଗଦ୍ ଗଦ୍ ଉଷା ବୈଠକଖାନାକୁ ସ୍ୱାଗତ କଲା

ଯତୀନ୍‌କୁ ।)

ଉଷା : ଆରେ ଯତୀନ୍ ବାବୁ ଯେ... ଭିତରକୁ ଆସନ୍ତୁ ନା । ଏମିତି ଅପରିଚିତ ଲୋକଙ୍କ ପରି ବାହାରେ ଠିଆ ହୋଇ ରହିଲେ କହିଁକି ? ଆସନ୍ତୁ ।

ଯତୀନ୍ : ବାପା... ?

ଉଷା : ବାହାରକୁ ଯାଇଛନ୍ତି । ଫେରୁ ଫେରୁ ବୋଧହୁଏ ରାତି ଦଶଟା । (ଯତୀନ୍ଦ୍ର ଫେରିଯାଉଥିଲେ) ଆରେ ! ଆପଣ ଚାଲିଯାଉଛନ୍ତି କୁଆଡ଼େ ? ଭିତରକୁ ଆସନ୍ତୁ ନା । ମୁଁ ଘରେ ଏକା ବସି ବସି ବୋର ହେଉଛି । ଆସନ୍ତୁ ।

ଯତୀନ୍ଦ୍ର : କିନ୍ତୁ ଆପଣଙ୍କ ବାପା ନାହାନ୍ତି । ମୋର କ'ଣ ଆପଣଙ୍କ ଘରକୁ ଯିବା ଠିକ୍ ହେବ ?

ଉଷା : (ହସି ହସି) କ'ଣ ଯେ ଆପଣ କହନ୍ତି ? ଆସନ୍ତୁ, ଆସନ୍ତୁ । ଅନ୍ତତଃ ବାପା ଆସିବା ଯାଏ ।

ଯତୀନ୍ଦ୍ର : ମାନେ... ? ବର୍ତ୍ତମାନ ମାତ୍ର ସାତଟା ବାଜିଛି । ଆପଣଙ୍କ ବାପା ଆସିବେ ପ୍ରାୟ ଦଶଟାବେଳେ । ମୁଁ ଆପଣଙ୍କ ଘରେ କ'ଣ ସେତେବେଳେଯାଏ ବସିଥିବି ?

ଉଷା : ହଁ । ସେଥିରେ କ୍ଷତି କ'ଣ ?

ଯତୀନ୍ଦ୍ର : ନା ଉଷା ଦେବୀ । ସେଥିରେ କ୍ଷତି ନଥିଲେ ବି ତାହା ସୁନ୍ଦର ନୁହେଁ ।

ଉଷା : ଦେଖନ୍ତୁ, କ'ଣ ସୁନ୍ଦର କ'ଣ ଅସୁନ୍ଦର ମୁଁ ସେସବୁ ଜାଣେନା । ମୋ' ବାପା ଆପଣଙ୍କୁ ତାଙ୍କ ସାଙ୍ଗରେ ଆମ ଘରକୁ ନେଇଆସିଥିଲେ । ସିଏ ମଧ୍ୟ ଆପଣଙ୍କ ସହିତ ମୋର ପରିଚୟ କରାଇ ଦେଇଥିଲେ । ସିଏ ବି ଆପଣଙ୍କୁ ଆମ ଘରକୁ ଆସିବାକୁ ଅନୁମତି ଦେଇଛନ୍ତି । ଆଉ ମତେ ଆପଣଙ୍କ ସହିତ ମିଳାମିଶା କରିବାର ସୁଯୋଗ ଦେଇଛନ୍ତି । ତେଣୁ ଆଉ କେଉଁଥିରେ ମୁଣ୍ଡ ପୂରେଇବାର ଆବଶ୍ୟକତା ମୋର ନାହିଁ ।

ଯତୀନ୍ଦ୍ର : ତେବେ ଆପଣ କହୁଛନ୍ତି ଯେତେବେଳେ...

ଉଷା : ହଁ । ମୁଁ କହୁଛି ଯେତେବେଳେ ଆପଣ ଆମ ଘରେ ବାପା ଆସିବା ପର୍ଯ୍ୟନ୍ତ ନିଶ୍ଚୟ ବସିବେ । (ହସିଲେ)

ଯତୀନ୍ଦ୍ର : ଆପଣ ଆଉ ମୁଁ ଦୁଇଜଣଙ୍କୁ ଏକା ଏକା ଡ୍ରଇଂ ରୁମ୍‌ରେ ବସିଥିବାର ଦେଖିଲେ ବାପା କିଛି ଖରାପ ଭାବିବେନି ତ ?

ଉଷା : (ଦୁଷ୍ଟାମିର ହସ ହସି) ଆପଣ ଆଉ ମୁଁ ଦୁଇଜଣ କ'ଣ କେବେ ଏକା ହୋଇପାରେ ? ଆମେ ଦୁହେଁ ନିଶ୍ଚୟ ଦୁଇଜଣ । ଏକା ଆଦୌ ନୁହେଁ । ତା' ଛଡ଼ା ବାପା ଆମଘରେ ଆପଣଙ୍କୁ ଦେଖିଲେ ନିଶ୍ଚୟ ଖୁସି ହେବେ । ଆଚ୍ଛା ମୋର ଗୋଟେ ଅନୁରୋଧ ରଖିବେ ?

ଯତୀନ୍ଦ୍ର : କୁହନ୍ତୁ- ଚେଷ୍ଟା କରିବି ।

ଉଷା : ଅନ୍ତତଃ ଏଇ 'ଆପଣ' ସମ୍ବୋଧନ ପାଇଁ ମୁଁ ଯୋଗ୍ୟ ନୁହେଁ । ବରଂ ମତେ 'ତୁମେ' କହିଲେ ମୁଁ ଖୁସିହେବି । କଥା ଦିଅନ୍ତୁ-

ଯତୀନ୍ଦ୍ର : (ହସି) ଚେଷ୍ଟା କରିବି ।

ଉଷା : ଧନ୍ୟବାଦ । (କିଛିକ୍ଷଣ ନୀରବତା ପରେ) କିଛି କହୁ ନାହାନ୍ତି ଯେ ?

ଯତୀନ୍ଦ୍ର : କିଛି କହିବାକୁ ଥିଲେ ତ ? ଆଚ୍ଛା ! ମୁଁ ବର୍ତ୍ତମାନ ଆସୁଚି... (ଚାଲିଯିବା ପାଇଁ ଉଠି ଠିଆହେଲେ ।)

ଉଷା : (ବିବ୍ରତ ଭାବରେ ସାମାନ୍ୟ ଶାସନ କରିବା ସ୍ୱରରେ) ଫେର୍ ସେଇ କଥା ? ଆପଣଙ୍କର କ'ଣ ହେଇଛି ଯତୀନ୍ ବାବୁ ? ମୋ ସାଙ୍ଗରେ ହସ ଖୁସିରେ ଦି'ପଦ କଥା କହିବାକୁ ଆପଣ କ'ଣ ଘୃଣାବୋଧ କରୁଛନ୍ତି ?

ଯତୀନ୍ଦ୍ର : (ବ୍ୟସ୍ତ ଭାବରେ) ଆରେ ଆପଣ... ।

ଉଷା : ଫେର୍ ସେଇ ଆପଣ... ।

ଯତୀନ୍ଦ୍ର : (ଇତସ୍ତତଃ ଭାବରେ) ନା ଉଷା... ମାନେ... ତୁମେ ସେ କଥା କାହିଁକି ଭାବୁଚ ? ବରଂ ମୋ ପରି ଗୋଟାଏ ପିତୃହୀନ ଅନାଥକୁ ତୁମ ବାପା ପୁଅପରି ଗ୍ରହଣ କରିଛନ୍ତି- ତୁମେ ମୋତେ ଏତେଟା ନିଜର ବୋଲି ଭାବୁଚ- ସ୍ନେହ ଦେଇଚ- ମୋର ପ୍ରତିଟି ମୁହୂର୍ତ୍ତକୁ ସରସ ଆଉ ସୁନ୍ଦର କରିବା ପାଇଁ ବିନା ଦ୍ୱିଧାରେ ଆଗେଇ ଆସିଚ— ମୁଁ ଏହାଠାରୁ ଆଉ ଅଧିକ କ'ଣ ଆଶା କରନ୍ତି ?

ଉଷା : ବାରମ୍ବାର ଏଇ କଥା କହି ଆପଣ କ'ଣ ମତେ କଷ୍ଟଦେବାକୁ ଚାହାଁଆନ୍ତି ?

ଯତୀନ୍ଦ୍ର : (ବ୍ୟଗ୍ର ଭାବରେ) ନା, ଉଷା ନା । ତୁମକୁ ଆଘାତ କରିବା ମୋର ଉଦ୍ଦେଶ୍ୟ ନୁହେଁ । ମୁଁ ଖାଲି ଭାବୁଚି, ସବୁଦିନ ପାଇଁ ସମସ୍ତଙ୍କ ଉପରେ ବୋଝହୋଇ ମୁଁ କ'ଣ ରହିଯିବି ? କାହାରି ପାଇଁ ମୋର କ'ଣ କିଛି

କରିବାର ନାହିଁ ? ଜନ୍ମ ଦେଇ ବୋଉ ଚାଲିଗଲା । ତା'ପରେ ବାପା...

ଉଷା : ମତେ କ୍ଷମାକରନ୍ତୁ ଯତୀନ୍ ବାବୁ । ଅପଣଙ୍କ ଜୀବନର ଏ କରୁଣ ଦୃଶ୍ୟପଟ ମତେ ଜଣା ନଥିଲା । ମୋ କଥାକୁ ମନରେ ଧରିବେନି । ତେବେ ଆପଣଙ୍କ ଗାଁରେ ନିଜର ବୋଲି କେହି... ?

ଯତୀନ୍ଦ୍ର : ନା, ଆମ ଗାଁରେ ମୋର ନିଜର ବୋଲି କେହି ନାହିଁ । ଜମିବାଡ଼ି ତ କିଛି ନଥିଲା । ଗାଁରେ ମାଗଣାଟାରେ ବା ମତେ ପୋଷିବ କିଏ ? ତେଣୁ ପଢ଼ିବା ଆଶା ନେଇ ଗାଁ ଛାଡ଼ିଲି । ଅନ୍ୟ ଉପରେ ବୋଝ ହେଇ ମୁଁ ଶିକ୍ଷିତ ହେଲି । କିନ୍ତୁ ପାଇଲି କ'ଣ ? ଋଣ ସୁଝିବାର ଶକ୍ତି ବି ଆଜି ମୋର ନାହିଁ ।

ଉଷା : ଆପଣଙ୍କ ଦୁଃଖ ପାଇଁ ମୁଁ ସମବେଦନା ଜଣାଉଛି । ତେବେ ଏଥିପାଇଁ ଏତେ ବ୍ୟସ୍ତ କାହିଁକି ? ଆପଣ ଏକଥା ସବୁ ମନରୁ ପୋଛି ଦିଅନ୍ତୁ । ଏମ୍.ଏ. ପାଶ୍ କରିଛନ୍ତି ଯେତେବେଳେ ଚାକିରିଟେ କ'ଣ ମିଳିବନି ? ଡେରି ଟିକେ ହେଇ ପାରେ । ଏଇ ସାମାନ୍ୟ କଥା ପାଇଁ ଏତେ ଚିନ୍ତା ? ଆଜି ବାପା ଆସନ୍ତୁ— ତାଙ୍କୁ କହି ଆପଣଙ୍କୁ ରୀତିମତ କିଛି ଶାସ୍ତି ନ ଦେଲେ ହେବନି ଦେଖୁଚି ।

ଯତୀନ୍ଦ୍ର : ତୁମେ ଖୁବ୍ ସରଳ ଉଷା ! ତୁମେ ହୁଏତ ଜାଣନା-

ଉଷା : ବାସ୍ ବାସ୍ । ମୁଁ ସବୁ ଜାଣିଚି । ଆପଣ ଆଗ ଚୁପ୍ ରହିଲେ; ଟିକେ ଏକୁଟିଆ ବସନ୍ତୁ ମୁଁ ଆପଣଙ୍କ ପାଇଁ ଜଳଖିଆ ଆଣେ ।

ଯତୀନ୍ଦ୍ର : ନା ଥାଉ । ଅଳ୍ପ ସମୟ ଆଗରୁ ଖାଇ ଆସିଛି । ତୁମେ ବରଂ ବସ । (ଆସ୍ତେ ଆସ୍ତେ ଯନ୍ତ୍ରସଂଗୀତର ସ୍ୱର ବଢ଼ିବାକୁ ଲାଗିଲା ଓ ଆଲୋକ କମି କମି ଆସି କ୍ରମେ ମଞ୍ଚ ଅନ୍ଧାର ହୋଇଗଲା । ପୁଣି ଆଲୁଅ ଜଳିଲା ବେଳକୁ ସେଇ ଡ୍ରଇଂରୁମ୍‌ର ଦୃଶ୍ୟ । ଅନ୍ୟ ଦିନକୁ ସୂଚାଇବା ପାଇଁ ଫୁଲଦାନୀରେ ଅନ୍ୟ ଫୁଲତୋଡ଼ା । କ୍ୟାଲେଣ୍ଡର୍‌ରେ ଭିନ୍ନ ତାରିଖ । ଟେବୁଲ୍ ଉପରେ ଭିନ୍ନ ରଂଗର ଟେବୁଲ୍ କ୍ଲଥ୍ ପଡ଼ିଛି ।)

ଉଷା : ଏତେ ନିଷ୍ଠୁର... ? ମୋର କୌଣସି ଅନୁରୋଧ ତୁମ ମନରେ ସାମାନ୍ୟ ରେଖାପାତ ବି କରିପାରୁନି ? ଏତେ ଅନ୍ୟମନସ୍କ କାହିଁକି ?

ଯତୀନ୍ଦ୍ର : (ଗମ୍ଭୀର ସ୍ୱରରେ) ଉଷା !

ଉଷା : କୁହ ।

ଯତୀନ୍ଦ୍ର : ଗୋଟେ କଥା ପଚାରିବି ?

ଉଷା : ବୁଝି ପାରୁନ କିଛି ? ହୃଦୟଙ୍ଗମ କରୁନ ମୋ ମନର ଭାଷା — ପ୍ରାଣର ଆକୁଳତା ? ନା ମୋର ସେଇ ଗୋଟିଏ ଦୋଷ— ଆମର କୋଠା ଅଛି-କାର୍ ଅଛି- ବ୍ୟାଙ୍କ୍‌ରେ ଅନେକ ଟଙ୍କା ଗଚ୍ଛିତ ଅଛି— ଆଉ ଆପଣଙ୍କର କିଛି ନାହିଁ । ଏଇଥାନା ? ଯାଆନ୍ତୁ, ଆଉ ଠିଆହେଲେ କାହିଁକି ? (କାନ୍ଦି ପକାଇଲା)

ଯତୀନ୍ଦ୍ର : ଓଃ ଉଷା ! ପ୍ଲିଜ୍... ଏଇ ସାମାନ୍ୟ କଥାରେ କାନ୍ଦି ପକେଇଲ ? ଦେଖ, ସେମିତି କନ୍ଦାକଟା କଲେ ମୁଁ ଆଉ ତୁମ ଘରକୁ ଆସିବିନି । (paure) ଉଷା ! ଦୁନିଆରେ ମଣଷପରି ବଂଚିରହିବାକୁ କିଏ ନ ଚାହେଁ ? ନିସଂଗ ଜୀବନର ଦୁର୍ବିସହତା ମୁଁ ମର୍ମେ ମର୍ମେ ଅନୁଭବ କରେ, ହେଲେ ମୁଁ କ'ଣ କରିପାରିବି ? ଗୋଟିଏ ଜୀର୍ଣ୍ଣ ଶୀର୍ଣ୍ଣ ମନ ନେଇ ତୁମ ବାପାଙ୍କ ଆଗରେ ଠିଆହେବାର ସତ୍‌ସାହସ ମୁଁ ହରେଇ ବସିଚି ।

ଉଷା : ମୋ ଉପରେ ଏତିକି ଭରସା କ'ଣ ତୁମର ନାହିଁ ? ମୁଁ ବି ତ ନାରୀ । ମୁଁ ଜାଣେ ବାପା କେବେହେଲେ ଆମ ବାହାଘରରେ ପ୍ରତିବନ୍ଧକ ହେବେନି ।

ଯତୀନ୍ଦ୍ର : କିନ୍ତୁ —

ଉଷା : କିନ୍ତୁ କ'ଣ ?

ଯତୀନ୍ଦ୍ର : ତୁମ ବାପାଙ୍କଠୁଁ ଯାହା ପାଇ ମୁଁ ଆଜି ମଣିଷ ହେଇଚି ସେ ଋଣରୁ ମୁକ୍ତ ହେବାର ସାହସ ମୁଁ ଏପର୍ଯ୍ୟନ୍ତ ସଂଚୟ କରିପାରିନି । ଅନେକ ଚେଷ୍ଟା କରି — ଏମିତି ବି ପିଅନ ଚାକିରିଟିଏ ବି ଯୋଗାଡ଼ କରିପାରିନି — କାରଣ ମୁଁ ସେଥିପାଇଁ ଅନୁପଯୁକ୍ତ — ଯେହେତୁ ମୁଁ ଖୁବ୍ ଉଚ୍ଚଶିକ୍ଷିତ । ଆଚ୍ଛା ଉଷା ! ସେଇ ଉଚ୍ଚଶିକ୍ଷାଟା କ'ଣ ମୋର ଭୁଲ ?

ଉଷା : ତୁମେ ସେ ସବୁ କଥା ଭୁଲିଯାଅ ଯତୀନ୍ଦ୍ର । ମନକୁ ଆଉ ଛୋଟ କରନା । ଦୟା, କୃତଜ୍ଞତା ଶବ୍ଦମାନଙ୍କର ପରିଭାଷା ଖୋଜି ଖୋଜି ତୁମେ ବ୍ୟସ୍ତ, ବିବ୍ରତ । ମାତ୍ର ମନେରଖ ଆମର ବାହାଘର ହୋଇଗଲେ, ତୁମେ ହେବ ବାପାଙ୍କର ସବୁ ସମ୍ପତ୍ତିର ମାଲିକ ।

ଯତୀନ୍ଦ୍ର : ନା ଉଷା ନା । ଦୟାକରି ତୁମେ ମତେ ପ୍ରଲୋଭିତ କରିବାକୁ ଚେଷ୍ଟା କରନା । ଦାରିଦ୍ର୍ୟର ଯୂପକାଠ ଭିତରେ ପେଷି ହୋଇ ମରୁଥିବା

ସାଧାରଣ ଯୁବକଟିଏ ମୁଁ । ଚନ୍ଦ୍ରିକା ସ୍ପର୍ଶରେ ପ୍ରଲୋଭନ ମୋ ପାଇଁ କ୍ଷଣିକ ମାତ୍ର । ତୁମକୁ ପତ୍ନୀ ରୂପେ ପାଇବାର କାମନା ମୋ ମନରେ ଝଡ଼ ସୃଷ୍ଟି କରିଛି । ଅନେକ ଭାବି, ଅନେକ ଚିନ୍ତାକରି ମୁଁ ସେଥିରୁ ନିଜକୁ ଦୂରେଇ ରଖିବାକୁ ନିଷ୍ପତ୍ତି ନେଇଛି ।

ଉଷା : ଯତୀନ୍ଦ୍ର !!

ଯତୀନ୍ଦ୍ର : ମତେ କ୍ଷମା କର ଉଷା । ମୁଁ ସମ୍ପୂର୍ଣ୍ଣ ନାଚାର ।

ଉଷା : ତୁମେ ଏତେ ନିଷ୍ଠୁର ... (ଜୋର୍‌ରେ କାନ୍ଦି ଉଠିଲା ।)

ଯତୀନ୍ଦ୍ର : ଉଷା ! ପିଲାଙ୍କ ପରି ହୁଅନା । ନିଜର ଜିଦି ଛାଡ଼ । ତୁମ ବାପାଙ୍କର ତୁମ ଓ ମୋ ଉପରେ ଥିବା ଅଗାଧ ବିଶ୍ୱାସକୁ ତାଙ୍କ ଅଲକ୍ଷ୍ୟରେ ପଦାନତ କରିବାକୁ ମୁଁ ସମ୍ପୂର୍ଣ୍ଣ ଅକ୍ଷମ । ତା'ଛଡ଼ା, ତୁମେ ମୋର ଆର୍ଥିକ ଅସଂଗତି ବିଷୟରେ ଜାଣ । ତୁମକୁ ବିବାହ କରି ଅନ୍ନ ସଂସ୍ଥାନର ବ୍ୟବସ୍ଥା କରି ନ ପାରିଲେ, ମୁଁ ମୋର କର୍ତ୍ତବ୍ୟରେ ଭୟଙ୍କର ଅବହେଳା କରିବି । ତୁମେ ଟିକେ ଧୈର୍ଯ୍ୟଧର — ଟିକେ ଅପେକ୍ଷା କର ।

(ଯନ୍ତ୍ର ସଂଗୀତ ମୂର୍ଚ୍ଛନାରେ ମଂଚ ଭରପୂର ହୋଇଗଲା ଓ ପରେ ପରେ ମଂଚ ଅନ୍ଧକାର ହୋଇଗଲା । ଏଥି ସହିତ ପରିବର୍ତ୍ତିତ ହେଲା ଦୃଶ୍ୟ । ସେଇ ଥାନାର ଦୃଶ୍ୟ । ବିଚିତ୍ରାନନ୍ଦ ବାବୁଙ୍କ ସମ୍ମୁଖରେ ଆସୀନ ଯତୀନ୍ଦ୍ର ।)

ବିଚିତ୍ରାନନ୍ଦ : ତା'ପରେ, ତା'ପରେ କ'ଣ ହେଲା ଯତୀନ୍ଦ୍ର ?

ଯତୀନ୍ଦ୍ର : ହଠାତ୍ ବୈଠକଖାନା ମଧ୍ୟକୁ ପଶିଆସିଲେ ସର୍ଦ୍ଦାରଜୀ । ହାତରେ ବ୍ରିଫ୍‌କେଶ । ସେ ମୋ କଥାର ଶେଷ କେଇଧାଡ଼ି ଶୁଣିଥିଲେ ବୋଧହୁଏ । ମୁହଁ ଥିଲା ଅତ୍ୟନ୍ତ ଗମ୍ଭୀର । ମତେ ଓ ଉଷାକୁ ଡ୍ରଇଂ ରୁମ୍‌ରେ ଦେଖି ମଧ ନ ଦେଖିଲା ପରି ଚାଲିଗଲେ ଘର ଭିତରକୁ । ଉଷା ଓ ମୁଁ ଆମ ଆସନ ଛାଡ଼ି ଉଠି ପଡ଼ିଲୁ । ମାତ୍ର ସେ ଆମକୁ କିଛି ନ କହିବାରୁ ମୋ ମନରେ ସନ୍ଦେହ ଓ ଭୟ ଘନିଭୂତ ହେବାରେ ଲାଗିଲା । ମୁଁ ସେଇ ରାତିରେ ତାଙ୍କ ଡ୍ରଇଂ ରୁମ୍ ଛାଡ଼ି ଚାଲି ଆସିଲି ଯେ ଆଉଥରେ ତାଙ୍କ ସଦର ଦରଜାରେ ମୋର ପାଦ ରଖିବାର ସାହସ ନଥିଲା ।

ବିଚିତ୍ରାନନ୍ଦ : Very pathetic । ତାପରେ —

ଯତୀନ୍ଦ୍ର : ଏ ଘଟଣାର କିଛିଦିନ ପରେ — ଦିନେ ରାତିରେ — ସମୟ ପ୍ରାୟ

ଦୁଇଟା ହେବ । ଭୀଷଣ ଗରମ ହେଉଥାଏ । ମୁଁ କବାଟ ଖୋଲା କରି ବିଛଣାରେ ଶୋଇ ଶୋଇ ଖଣ୍ଡିଏ ଇଂରାଜୀ ଉପନ୍ୟାସ ପଢୁଥାଏ । ହଠାତ୍ କାହାର ପାଦ ଶବ୍ଦରେ ମୋର ଧ୍ୟାନ ଭାଙ୍ଗିଗଲା । ମୁଁ ଦେଖିଲି ଦ୍ୱାର ପାଖରେ ଉଷା ଠିଆ ହୋଇଛି ।

(ଆଲୋକ ଓ ଯନ୍ତ୍ର ସଂଗୀତରେ ଦୃଶ୍ୟ ପରିବର୍ତ୍ତନର ସୂଚନା)

ଯତୀନ୍ଦ୍ର : (ଆଶ୍ଚର୍ଯ୍ୟ ହୋଇ) ଉଷା ! ତୁମେ ଏତେ ରାତିରେ ଏଠି ? ବାପାଙ୍କର ଦେହ ଭଲ ଅଛି ତ ?

ଉଷା : ତୁମେ ଆମ ଘରକୁ ଯାଉନା ଯେ ?

ଯତୀନ୍ଦ୍ର : ସେଦିନର ପରିସ୍ଥିତି ପାଇଁ ତୁମ ବାପାଙ୍କ ପାଖରେ ମୁହଁ ଦେଖାଇବାକୁ ମୋର ଆଉ ସାହସ ନାହିଁ ।

ଉଷା : (ଭିତରକୁ ଆସି) ବାପା ତୁମ ଉପରେ ରାଗି ନାହାନ୍ତି । ସେ ବୋଧହୁଏ ମୋ ଉପରେ ରାଗି ଯାଇଛନ୍ତି । ଏଠାରୁ ବ୍ୟବସାୟ ବନ୍ଦ କରି ସେ ଦିଲ୍ଲୀ ଚାଲିଯିବାକୁ ଠିକ୍ କରିଛନ୍ତି ।

ଯତୀନ୍ଦ୍ର : ବେଶ୍ ତ ! କେବେ ଯାଉଛ ? ଯିବା ଆଗରୁ ମତେ ଟିକେ ଖବର ଦେବ । ମୁଁ ଯାଇ ତୁମ ବାପାଙ୍କୁ କ୍ଷମା ମାଗି ଆସିବି ।

ଉଷା : କିନ୍ତୁ ଯତୀନ୍ଦ୍ର ! ଆଜି ମୁଁ ଆଉ ଫେରିଯିବାକୁ ଆସିନି । ଅନେକ ଭାବିଚିନ୍ତି ମୁଁ ଆଜି ଘରୁ ଗୋଡ଼ କାଢ଼ି ସବୁଦିନ ପାଇଁ ତୁମ ନିକଟକୁ ଚାଲିଆସିଛି । ମତେ ଯାହା କହିବ କୁହ ପଛେ — ହସି ହସି ସହିନେବି । ମାତ୍ର ଘରକୁ ଫେରିଯିବାକୁ କହିବନି । ମତେ ତୁମେ ଆଜି ଗ୍ରହଣ କର ଯତୀନ୍ଦ୍ର — ତୁମର ପତ୍ନୀ ରୂପେ ମତେ ଆଜି ଗ୍ରହଣ କର । ତା'ନହେଲେ...

ଯତୀନ୍ଦ୍ର : (ଅତ୍ୟନ୍ତ ଗମ୍ଭୀର ଭାବରେ) ନା, ଉଷା ! ତୁମେ ପିଲାଙ୍କ ପରି ହୁଅନା ! ବିବାହଟା କେବେ ପିଲାଖେଳ ନୁହେଁ ଯେ ଯେତେବେଳେ ଇଚ୍ଛା କଲେ ବିବାହ କରିପାରିବ । ସେଥିପାଇଁ ଆବଶ୍ୟକୀୟ ବିଭିନ୍ନ ଜିନିଷ ମଧ୍ୟରୁ ଆର୍ଥିକ ସଂହତି ଯେ ଅତ୍ୟନ୍ତ ଜରୁରୀ ତାହା କ'ଣ ତୁମେ ଜାଣନା ?

ଉଷା : ମୁଁ ସବୁ ଜାଣେ ଯତୀନ୍ଦ୍ର । ସେଥିପାଇଁ ମଧ୍ୟ ମୁଁ ପ୍ରସ୍ତୁତ ହୋଇ ଆସିଛି ।

ଯତୀନ୍ଦ୍ର : ମାନେ ? ତୁମେ ବାପାଙ୍କ ଘରୁ ଟଙ୍କା ଚୋରି କରି ନେଇଆସିଛ ?

ଉଷା : ନା, ଯତୀନ୍ଦ୍ର, ନା ମୁଁ ଟଙ୍କା ଚୋରିକରି ନାହିଁ କି ଏହା ବାପାଙ୍କ ଟଙ୍କା ନୁହେଁ ।

ଯତୀନ୍ଦ୍ର : ତେବେ ତୁମେ ଟଙ୍କା ଆଣିଲ କେଉଁଠୁ ?

ଉଷା : ସେ ଅନେକ କଥା ଯତୀନ୍ଦ୍ର । ସେ କଥା ତୁମେ ଆସ୍ତେ ଆସ୍ତେ ଜାଣିବ । କିନ୍ତୁ ଗୋଟିଏ କଥା ବର୍ତ୍ତମାନ ଜାଣିରଖ ଯେ ମୁଁ ଯେଉଁ ବ୍ୟାଙ୍କ୍ ବାଲାନ୍ସ ସାଙ୍ଗରେ ନେଇ ଆସିଛି, ତାହା ବାପାଙ୍କର ନୁହେଁ କି ବାପା କେବେ ବି ସେ ଟଙ୍କା ଖୋଜିବେନି ।

ଯତୀନ୍ଦ୍ର : ତଥାପି ତୁମକୁ ଆଜି ଫେରିଯିବାକୁ ପଡ଼ିବ ଉଷା । ତୁମ ବାପାଙ୍କର ସ୍ନେହ ଆଉ ବିଶ୍ୱାସକୁ ମୁଁ ଏପରି ଭାବରେ ପଦାଘାତ କରି ନିଜର ସ୍ୱାର୍ଥ ସାଧନ କରିପାରିବିନି ।

ଉଷା : ମୁଁ କିନ୍ତୁ ଆଜି ଫେରିଗଲେ, ଆମର ମିଳନ ଏକାବେଳକେ ଅସମ୍ଭବ ହୋଇପଡ଼ିବ ଯତୀନ୍ଦ୍ର । ଆମେ ପରସ୍ପରକୁ ବୋଧହୁଏ ଚିରଦିନ ପାଇଁ ହରେଇ ବସିବା ।

ଯତୀନ୍ଦ୍ର : ଯଦି ଭାଗ୍ୟରେ ତାହା ହେବାକୁ ଥିବ ହେବ । ତଥାପି ତୁମକୁ ଆଜି ଫେରିଯିବାକୁ ହେବ ଉଷା । ଚାଲ, ମୁଁ ତୁମକୁ ନେଇ ତୁମ ବାପାଙ୍କ ପାଖରେ ଛାଡ଼ିଦେଇ ଆସିବି ।

ଉଷା : ମତେ କ୍ଷମାକର ଯତୀନ୍ଦ୍ର । ମୁଁ ଆଉ ତୁମ ଘରଛାଡ଼ି ଫେରିଯିବାକୁ ଆସିନି । ତୁମ ପାଦ ଧରୁଛି, ତୁମେ ମତେ ଆଉ ଫେରିଯିବା କଥା କୁହନି । ମତେ ଗ୍ରହଣ କର — ତୁମ ପତ୍ନୀ ଭାବରେ ସବୁଦିନ ପାଇଁ ଗ୍ରହଣ କର । (ଆକୁଳ ଭାବରେ କାନ୍ଦି ଉଠିଲା ଉଷା ।)

(ଆଲୋକ ଓ ଯନ୍ତ୍ର ସଂଗୀତର ମୂର୍ଚ୍ଛନାରେ ଦୃଶ୍ୟ ପରିବର୍ତ୍ତନ ହେବାର ସୂଚନା । ପୁଣି ସେହି ଟାଉନ୍‌ଥାନା । ବସିଛନ୍ତି ବିଚିତ୍ରାନନ୍ଦ ଓ ଯତୀନ୍ଦ୍ର ।)

ବିଚିତ୍ରାନନ୍ଦ : ତୁମେ କ'ଣ ସେଦିନ ଉଷାକୁ ତୁମ ଘରେ ରାତିରେ ରହିବାକୁ ଅନୁମତି ଦେଲ ?

ଯତୀନ୍ଦ୍ର : ନା । ମୁଁ ସେପରି ଜଘନ୍ୟ ଅନ୍ୟାୟକୁ ସେ ରାତିରେ ପ୍ରଶ୍ରୟ ଦେଇ ନଥିଲି । ଉଷାକୁ ଅନେକ ସମୟ ଧରି ବୁଝାଇବାକୁ ଚେଷ୍ଟା କଲି ।

ବିଚିତ୍ରାନନ୍ଦ : ତୁମ କଥାରେ ଉଷା କ'ଣ ରାଜି ହେଇ ଘରକୁ ଫେରିଗଲା ?

ଯତୀନ୍ଦ୍ର : ସେ କଥା ବି ନୁହେଁ । ତେବେ ଅନେକ ବୁଝାସୁଝା କଲାପରେ ସେ ବୋଧହୁଏ କ୍ରମେ କ୍ରମେ ମୋ ଉପରେ ରାଗିବାକୁ ଆରମ୍ଭ କରୁଥିଲା ।

ବିଚିତ୍ରାନନ୍ଦ : ତା'ପରେ ? ତା'ପରେ କ'ଣ ହେଲା ?

ଯତୀନ୍ଦ୍ର : ମୁଁ ଉଷା କଥାରେ ଶେଷ ପର୍ଯ୍ୟନ୍ତ ଏକମତ ହୋଇପାରିଲି ନାହିଁ । ତେଣୁ ତା' ମନରେ ମୋ ପ୍ରତି ରାଗ ଓ ଘୃଣା ଜମାଟ୍‌ବାନ୍ଧି ଏକୀଭୂତ ହୋଇଗଲା ।

ବିଚିତ୍ରାନନ୍ଦ : ସେଇଠୁ କ'ଣ ହେଲା ?

ଯତୀନ୍ଦ୍ର : ମୁଁ ତାକୁ ଘରକୁ ଯିବା ପାଇଁ ବାଧ କଲି । ତା ମନରୁ ସେତେବେଳକୁ ବୋଧହୁଏ ସମସ୍ତ ଦ୍ୱିଧା ଓ ସଂକୋଚ ଅପସରି ଯାଇଥିଲା । ସିଏ ଆଉ ରହିବାକୁ ଜିଦ୍ କଲାନାହିଁ । ମୁଁ ତାକୁ ସାଙ୍ଗରେ ନେଇ ବାହାରକୁ ଆସିଲି ।

ବିଚିତ୍ରାନନ୍ଦ : ସେତେବେଳକୁ ରାତି କେତେ ହୋଇଥିଲା ?

ଯତୀନ୍ଦ୍ର : ଅନେକ ! ମାନେ, ପ୍ରାୟ ସକାଳ ହେଇ ଆସୁଥିଲା । ସର୍ଦ୍ଦାରଜୀଙ୍କ ଛାତ ଉପରକୁ ଚାହିଁ ଦେଖିଲି କି ସେ କୋଠା ଉପରେ ହାତରେ ବନ୍ଧୁକ ଧରି ପାଗଳା ହାତୀ ପରି ଘୁରି ବୁଲୁଛନ୍ତି ।

ବିଚିତ୍ରାନନ୍ଦ : ତା'ପରେ ?

ଯତୀନ୍ଦ୍ର : ମତେ ଆଉ ଉଷାକୁ ତାଙ୍କ ଘର ଆଡ଼କୁ ଯିବାର ଦେଖି ସେ ତଳକୁ ଓହ୍ଲାଇ ଆସିଲେ । ମୁଁ ତାଙ୍କ ପାଦ ଧରି କ୍ଷମା ମାଗିଲି । ଉଷା ଛଳଛଳ ଆଖିରେ ଘରେ ପଶିଲା । ମୁଁ ଅଧିକ ସମୟ ଅପେକ୍ଷା ନକରି ନୀରବରେ ନତମୁଖୀ ହୋଇ ଘରକୁ ଫେରିଆସିଲି ।

ବିଚିତ୍ରାନନ୍ଦ : ତା'ପରେ କ'ଣ ହେଲା ?

ଯତୀନ୍ଦ୍ର : ଅଳ୍ପଦିନ ପରେ ସର୍ଦ୍ଦାରଜୀ ଦିଲ୍ଲୀ ଚାଲିଗଲେ ।

ବିଚିତ୍ରାନନ୍ଦ : ତା'ହେଲେ ସେ କାହାଣୀର ପୂର୍ଣ୍ଣଚ୍ଛେଦ ପଡ଼ିଗଲା — ନା କ'ଣ ?

ଯତୀନ୍ଦ୍ର : ପୂର୍ଣ୍ଣଚ୍ଛେଦ ପଡ଼ିଲା କୋଉଠି ସାର୍ ?

ବିଚିତ୍ରାନନ୍ଦ : ପୁଣି କ'ଣ ହେଲା ?

ଯତୀନ୍ଦ୍ର : କିଛିଦିନ ପରେ ଉଷାର ହାତଲେଖା ଚିଠିଖଣ୍ଡେ ପାଇଲି, ତା'ର ନୂଆଦିଲ୍ଲୀ ଠିକଣା ସହିତ । ସେଥିରେ ସେ ମତେ ତାକୁ ଚିଠି ଲେଖିବାକୁ ଅନୁରୋଧ କରିଥିଲା ।

ବିଚିତ୍ରାନନ୍ଦ : ତୁମେ ଚିଠି ଲେଖିଲ ?

ଯତୀନ୍ଦ୍ର : ନା ! କେବଳ ସେଇ ଖଣ୍ଡିଏ ନୁହେଁ । ପରକୁ ପର ସେ ଅନେକ ଚିଠି ଲେଖି ଉତ୍ତର ଦାବି କରିଥିଲା । ମାତ୍ର ମୁଁ ନୀରବ ରହିବାରୁ କ୍ରମେ କ୍ରମେ ତା ମନରୁ ବୋଧହୁଏ ସରାଗ ମରି ମରି ଗଲା । କାରଣ ମୁଁ ତା'ଠାରୁ

ଆଉ ଚିଠି ପାଇଲି ନାହିଁ ।

ବିଚିତ୍ରାନନ୍ଦ : ତା'ହେଲେ ସେ ଅଧ୍ୟାୟଟା ଏଇମିତି ଶେଷ ହେଲା ?

ଯତୀନ୍ଦ୍ର : ନା ସାର୍ ! ସେ ଅଧ୍ୟାୟର ଶେଷ ଏଯାଏ ହେଇନି । ସେମାନେ କଟକ ଛାଡ଼ିବାର ପ୍ରାୟ ଛମାସ ପରେ ଉଷାଠାରୁ ପୁଣି ଖଣ୍ଡେ ଚିଠି ପାଇଲି । ସେଇ ଲଫାପାରେ ସର୍ଦ୍ଧାରଜୀ ମଧ୍ୟ ଖଣ୍ଡେ ଚିଠି ଲେଖିଥିଲେ । ସେଥିରେ ଉଲ୍ଲେଖ ଥିଲା କି ଉଷାର ବାହାଘର ଠିକ୍ ହୋଇଯାଇଛି । ସେ ବାହା ହୋଇ ଚାଲିଯିବା ଆଗରୁ ମତେ ଶେଷଥର ପାଇଁ ଦେଖିବାକୁ ଚାହେଁ । ତେଣୁ ମତେ ଦିଲ୍ଲୀ ଯିବାକୁ ସର୍ଦ୍ଧାରଜୀ ନିମନ୍ତ୍ରଣ କରିଛନ୍ତି ।

ବିଚିତ୍ରାନନ୍ଦ : ବେଶ ତ । ଭଲ କଥା । ତୁମେ ଦିଲ୍ଲୀ ଗଲ ?

ଯତୀନ୍ଦ୍ର : ହଁ ସାର୍ । ଆନନ୍ଦର ତୀବ୍ରତାରେ ମୁଁ ଉଦ୍‌ବେଳିତ ହୋଇ ପଡ଼ିଲି । ତରତରରେ ମୁଁ ନିଜକୁ ପ୍ରସ୍ତୁତ କରିନେଲି ଦିଲ୍ଲୀ ଯିବାକୁ । ଆଗରୁ ଟେଲିଗ୍ରାମଟିଏ ପଠାଇ ଠିକ୍ ସମୟରେ ଯାଇ ଦିଲ୍ଲୀରେ ପହଞ୍ଚିଲି ।

ବିଚିତ୍ରାନନ୍ଦ : ତୁମେ ଆଗରୁ କେବେ ଦିଲ୍ଲୀ ଯାଇଥିଲ ?

ଯତୀନ୍ଦ୍ର : ନା ।

ବିଚିତ୍ରାନନ୍ଦ : ତେବେ ତୁମେ ସେଠାରେ ଅଚିହ୍ନା ଜାଗାରେ ଅସୁବିଧାରେ ପଡ଼ିଥିବ ତ ?

ଯତୀନ୍ଦ୍ର : ନା ସାର ! ସେଠାରେ ପହଞ୍ଚି ସର୍ଦ୍ଧାରଜୀଙ୍କ ଘର ଖୋଜି ପାଇବାରେ କିଛି ଅସୁବିଧା ହେଲାନାହିଁ । ଟ୍ୟାକ୍ସିରୁ ଓହ୍ଲେଇ ସର୍ଦ୍ଧାରଜୀଙ୍କ ଦ୍ୱାରର କଲିଂ ବେଲର ସୁଇଚ୍ ଟିପିବା ସଂଗେ ସଂଗେ କବାଟ ଖୋଲିଗଲା । (ଆଲୋକ ଓ ଯନ୍ତ୍ର ସଂଗୀତ ପରିବର୍ତ୍ତନ ମାଧ୍ୟମରେ ଦୃଶ୍ୟ ପରିବର୍ତ୍ତନର ସୂଚନା । ସର୍ଦ୍ଧାରଜୀଙ୍କ ବୈଠକଖାନା)

ସର୍ଦ୍ଧାରଜୀ : ତୁମେ ଆସିଛ ଯତୀନ୍ଦ୍ର ? ଭଲ କରିଛ । ଆସ, ଭିତରକୁ ଆସ, ବସ ।

ଯତୀନ୍ଦ୍ର : (ନିଜର ଆସନ ଗ୍ରହଣ କରି) ଉଷା !

ସର୍ଦ୍ଧାର୍‌ଜୀ : (ନିଜର କୋହକୁ ଚାପି ରଖିବାର ବୃଥା ଚେଷ୍ଟା ମଧ୍ୟରେ) ଉଷା ଆଉ ନାହିଁ ଯତୀନ୍ଦ୍ର । ତୁମର ଟେଲିଗ୍ରାମ ପାଇଲା ପରେ ହଠାତ୍ ଯେମିତି ତା'ର କ'ଣ ହୋଇଗଲା । ତା' ମୁହଁରୁ ହସ ସତେ ଯେମିତି ଲିଭିଗଲା ।

ଯତୀନ୍ଦ୍ର : ତା'ପରେ ?

ସର୍ଦ୍ଧାରଜୀ : ତା'ପରେ ଆଉ କ'ଣ ? ମୁଁ ମୋ କାମରେ ପାର୍ଲିଆମେଣ୍ଟ ରୋଡ଼କୁ ଯାଇଥିଲି । ସେଠାରୁ ଫେରି ଦେଖେ ତ... (ନୀରବ ରହିଲେ)

ଯତୀନ୍ଦ୍ର : (ବ୍ୟଗ୍ର ଭାବରେ) କ'ଣ ଦେଖିଲେ... ?
ସର୍ଦ୍ଦାରଜୀ : ଉଷା ବିଷଖାଇ ଆତ୍ମହତ୍ୟା କରିଛି ।
ଯତୀନ୍ଦ୍ର : (ଆଶ୍ଚର୍ଯ୍ୟ ହୋଇ) ଆତ୍ମହତ୍ୟା ?
ସର୍ଦ୍ଦାରଜୀ : ହଁ ।
ଯତୀନ୍ଦ୍ର : କେଉଁଦିନ ?
ସର୍ଦ୍ଦାରଜୀ : ଗତକାଲି ସନ୍ଧ୍ୟାବେଳେ । (କାନ୍ଦି ଉଠିଲେ ସର୍ଦ୍ଦାରଜୀ)
(ଆଲୋକ ଓ ବାଦ୍ୟଯନ୍ତ୍ରରେ ଦୃଶ୍ୟ ପରିବର୍ତ୍ତନର ସୂଚନା । ପୁନଶ୍ଚ ଟାଉନ୍ ଥାନାର ଦୃଶ୍ୟ ।)
ବିଚିତ୍ରାନନ୍ଦ : ଦୁଃଖର କଥା । ପ୍ରକୃତରେ ଏହା ଏକ ଅତ୍ୟନ୍ତ ଦୁଃଖଦ ଓ ଯନ୍ତ୍ରଣାଦାୟକ ଘଟଣା । ତା'ପରେ କ'ଣ ହେଲା ଯତୀନ ?
ଯତୀନ୍ଦ୍ର : (ଦୁଃଖ ଓ ଗାମ୍ଭୀର୍ଯ୍ୟ ଭାବରେ) ଉଷାର ଆତ୍ମହତ୍ୟା ସମ୍ବାଦ ମୋ ମନରେ ପ୍ରଚଣ୍ଡ ଆଘାତ ସୃଷ୍ଟି କରିଥିଲା । ସର୍ଦ୍ଦାରଜୀଙ୍କ ବିରୁଦ୍ଧରେ ମୋ ମନଟା ଭୀଷଣ ଭାବରେ ବିକ୍ଷେଇ ଉଠିଲା । ମାତ୍ର ଅଜଣା ସ୍ଥାନରେ ମୁଁ ନୀରବ ରହିବା ଶ୍ରେୟ ମନେ କଲି । ତେବେ ଆଉ ସର୍ଦ୍ଦାରଜୀଙ୍କ ଘରେ ନ ରହି ମୁଁ ସେଠାରୁ ପୁଣି ଷ୍ଟେସନକୁ ଫେରି ଆସିଲି ।
ବିଚିତ୍ରାନନ୍ଦ : ତା'ପରେ...?
ଯତୀନ୍ଦ୍ର : ଟ୍ରେନ୍ ଟିକେଟ୍ କିଣି ମୁଁ ଯେ କିପରି ଭାବରେ ଆସି ଘରେ ପହଞ୍ଚିଲି ତାହା ମୋର ଠିକ୍ ମନେ ପଡୁନି । ଦୁଃଖ ଓ ବେଦନାରେ ମୁଁ ସମ୍ପୂର୍ଣ୍ଣ ଭାବରେ ଜଡ଼ ହୋଇ ଯାଇଥିଲି । ଘରେ ପହଞ୍ଚିବା ଦିନ ରାତି ଠିକ୍ ବାରଟା । ମୁଁ ବିଛଣାରେ ଶୋଇଛି । ହଠାତ ଘରର ରୁଦ୍ଧଦ୍ୱାର ବଳେ ବଳେ ଖୋଲିଗଲା । ସେ ଆସିଲା ଇନ୍ସପେକ୍ଟର — ହସି ହସି ଚଞ୍ଚଳ ପାଦରେ ସେ ମୋ ଶୋଇବା ଘର ଭିତରକୁ ଆଗେଇ ଆସିଲା । ମୁଁ ଭୟ ଓ ଉତ୍ତେଜନାରେ ମୋ ବିଛଣାରୁ ଉଠି ପଡୁଥିଲି ।
(ଯନ୍ତ୍ର ସଂଗୀତର ମୂର୍ଚ୍ଛନା ଓ ଆଲୋକ ସାହାଯ୍ୟରେ ଦୃଶ୍ୟ ପରିବର୍ତ୍ତନର ସୂଚନା । ପୁଣି ସେଇ ବେଡ୍ ରୁମ୍ । ସାଜସଜ୍ଜା ଅତି ସାଧାରଣ ।)
ଉଷା : ଆରେ ତୁମ ଦେହ ଖରାପ । ଏମିତି ବ୍ୟସ୍ତ ହୋଇ ଉଠୁଛ କାହିଁକି ? ଶୁଅ... ସୁନାପିଲାଟି ପରି ଶୋଇଲ ।
ଯତୀନ୍ଦ୍ର : ଉଷା... ।

ଉଷା : କ'ଣ ହେଲା ? ଏମିତି ବ୍ୟସ୍ତ ହେଉଛ କାହିଁକି ? ମତେ ବିବାହ କଲନି ବୋଲି ତୁମେ ଭୟ କରୁଛ ? ଦୁଃଖ କରୁଛ ? ମାତ୍ର ଦେଖ ଯତୀନ୍ — ମୁଁ ଫେର୍ ତୁମ ପାଖକୁ ଆସିଛି । ତୁମ ବ୍ୟତୀତ ମୁଁ କ'ଣ ଆଉ କାହାକୁ ବିବାହ କରିପାରିବି ?

ଯତୀନ୍ଦ୍ର : ଉଷା... ମତେ କ୍ଷମାକର ଉଷା !!

ଉଷା : ତୁମେ ବ୍ୟସ୍ତ ହୁଅନା ଯତୀନ୍ । ମୁଁ ସବୁଦିନ ପାଇଁ ତୁମର ହୋଇ ରହିଯିବାକୁ ଆସିଛି । ଆଜି ଆଉ ତୁମେ ମତେ ଫେରାଇ ଦିଅନା ।

ଯତୀନ୍ଦ୍ର : ଉଷା !...

(ଦୃଶ୍ୟ ପରିବର୍ତ୍ତନର ସୂଚନା ଆଲୋକ ଓ ବାଦ୍ୟ ଦ୍ୱାରା ଜଣାଇ ଦିଆଗଲା । ପୁନଶ୍ଚ ଥାନାର ଦୃଶ୍ୟ ।)

ଯତୀନ୍ଦ୍ର : ଏମିତି ଅନେକ କଥା କହି କହି ଉଷା ମୋ ଛାତି ଉପରେ ଲୋଟି ପଡ଼ିଲା । ତା'ପରେ କ'ଣ ହେଲା ମୁଁ ଜାଣେନା । ମାତ୍ର ପରଦିନ ସକାଳେ ମୋ ନିଦ ଭାଙ୍ଗିବାରୁ ମୁଁ ଦେଖିଲି କି ମୁଁ ସତୀଚଉରାର ସମାଧି ବହୁଳ ଶ୍ମଶାନରେ ଶୋଇଛି । ଆପଣ ବିଶ୍ୱାସ କରନ୍ତୁ ଇନ୍ସପେକ୍ଟର ! ସେହି ଦିନଠାରୁ ପ୍ରାୟ ମୁଁ ମୋ ନିଜ ଘରେ ନିଜ ବିଛଣାରେ ରାତିରେ ଶୋଇପାରୁନି ।

ବିଚିତ୍ରାନନ୍ଦ : ଇଏତ ବଡ଼ ଆଶ୍ଚର୍ଯ୍ୟ କଥା ?

ଯତୀନ୍ଦ୍ର : ଠିକ୍ ଅର୍ଦ୍ଧରାତ୍ର ପରେ ରୁଦ୍ଧଦ୍ୱାରକୁ ଉନ୍ମୁକ୍ତ କରି ମୋ କୋଠରୀକୁ ପଶିଆସେ ଉଷା । ହସି ହସି ମୋ ଛାତିରେ ଲୋଟିଯାଏ — ଏବଂ ତା'ପରଦିନ ସକାଳେ ମୁଁ ମତେ କୌଣସି ନା କୌଣସି ଶ୍ମଶାନରୁ ଘରକୁ ଫେରାଇ ଆଣେ ।

ବିଚିତ୍ରାନନ୍ଦ : ଏକଥା କ'ଣ ତୁମେ ତୁମ ଘରେ କାହାକୁ କହିନାହଁ ?

ଯତୀନ୍ଦ୍ର : ସମସ୍ତେ ଜାଣନ୍ତି ସାର । ମୋର ତ ଆତ୍ମୀୟସ୍ୱଜନ କେହି ନାହିଁ । ଜଣେ ସମ୍ପର୍କୀୟ ମାମୁଁ ମୋର ଅନେକ ଚିକିତ୍ସା କରାଇଛନ୍ତି । ମାଇଁ ଅନେକ ଗୁଣିଆ ଡକାଇ ଝଡ଼ାଫୁଙ୍କା, ପୂଜାପାଠ କରାଇଛନ୍ତି । କିନ୍ତୁ କେଉଁଥିରେ କିଛି ଫଳ ହେଉନି ।

ବିଚିତ୍ରାନନ୍ଦ : ତେବେ ବର୍ତ୍ତମାନ ତୁମେ କ'ଣ କରିବ ବୋଲି ଭାବୁଛ ?

ଯତୀନ୍ଦ୍ର : କ'ଣ ଆଉ କରିବି ? (ଦୀର୍ଘ ଶ୍ୱାସ ପକାଇ) ମୋ ଜୀବନର ଶେଷ

ତାରିଖ ଖୁବ୍ ପାଖେଇ ଆସିଲାଣି । ମୁଁ ଆଉ ବେଶିଦିନ ବଂଚିବିନି । ମୋର ଆସନ୍ନ ମୃତ୍ୟୁ ଅପେକ୍ଷା କରି ମୋର ସମ୍ପର୍କୀୟମାନେ ହତାଶ ହେଲେଣି । ଆପଣ ମତେ ବିଶ୍ୱାସ କରନ୍ତୁ । ମୁଁ ଚୋର ନୁହେଁ । ଆଦୌ ଚୋର ନୁହେଁ । ମତେ ଯେଉଁ ସ୍ତ୍ରୀ ଲୋକଟି ମା' ପରି ପାଳିଛି ସିଏ ମୋର ଦୁଃଖ ଦେଖି ଦେଖି ଏବେ ରୁଗ୍ଣା । ବର୍ତ୍ତମାନ ମତେ ଅପେକ୍ଷା କରି ବସିଥିବ । ମୁଁ ଜୀବନରେ ଅଛି କି ନାହିଁ, ସେହି ଚିନ୍ତାରେ ସେ ଘାରି ହେଉଥିବ । ମତେ ଦୟାକରି ଛାଡ଼ି ଦିଅନ୍ତୁ ସାର୍ ।

ବିଚିତ୍ରାନନ୍ଦ : ତୁମେ ଯିବ ଯତୀନ୍ଦ୍ର ? ଯାଅ ।

ଯତୀନ୍ଦ୍ର : ଧନ୍ୟବାଦ ସାର୍ ! ମୁଁ ଆସୁଛି । ଏଇ ମୋ ମାଆ ସାଙ୍ଗରେ ଉଷାକୁ ନେଇ ଆସିଲାଣି । ଉଷା ବଧୂ ବେଶରେ ଆମ ଘର ଏରୁଣ୍ଡିରେ ପାଦ ଥୋଇଲାଣି । ଆଉ ଅଳ୍ପ ସମୟ ପରେ ସିଏ ମୋର ଶୋଇବା ଘରକୁ ପତ୍ନୀ ରୂପେ ପ୍ରବେଶ କରିବ । ମୁଁ ତାକୁ ଆଲିଙ୍ଗନ କରିବାକୁ ହାତ ବଢ଼େଇଲେ ସିଏ ଉପହାସ କରି ଘରୁ ବାହାରି ଚାଲିଯିବ । ଏଇ ଉଷା ଚାଲିଗଲା ସାର୍ ! ଉଷାକୁ ଧରନ୍ତୁ, ତାକୁ ଯିବାକୁ ଦିଅନ୍ତୁ ନାହିଁ, ସାର୍ ! ତାକୁ ଅଟକାନ୍ତୁ । ମୁଁ କଥା ଦେଉଛି ତାକୁ ବାଧକରି ଆଉ ତା ବାପାଙ୍କ ପାଖରେ ନେଇ ଛାଡ଼ି ଆସିବି ନାହିଁ । ମୁଁ ତାକୁ ବିବାହ କରିବି । ମୋର ପତ୍ନୀର ସମ୍ମାନ ଦେବି । ଉଷା ପଳାଇଯାଉଛି, ସାର୍ । ଧରନ୍ତୁ ସା....ର୍ । (ତଳେ ପଡ଼ିଗଲା ଯତୀନ୍ଦ୍ର ଅଚେତ୍ ଅବସ୍ଥାରେ । ମଞ୍ଚର ଶେଷ ଯବନିକା ନଇଁ ଆସିଲା । ନାଟକର ଶେଷ ପରିଣତି ଦର୍ଶକମାନଙ୍କ ଚିନ୍ତା ଉପରେ ଛାଡି ।)

ooo